# ନିରୁପମା

(ନାଟକ)

ଲେଖକ

ଶ୍ରୀ ଭିକାରିଚରଣ ପଟ୍ଟନାୟକ

ପ୍ରଥମ ସଂସ୍କରଣ
୧୯୫୭

ପ୍ରକାଶକ :—
ଶ୍ରୀ ରାଧାନାଥ ରଥ
ସମ୍ପାଦକ, 'ସମାଜ'

ମୂଲ୍ୟ— ଏକ ଟଙ୍କା ପଚିଶ ନୂଆ ପଇସା
ଏକ ଟଙ୍କା ଆଠଅଣା

[‘ସମାଜ’ର ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ଆନୁକୂଲ୍ୟରେ ଏ ପୁସ୍ତକଟି ଛପାଇବାର ସମସ୍ତ ବ୍ୟୟ ‘ସମାଜ’ ଅନୁଷ୍ଠାନ ବହନ କରିଥିବାରୁ କୁଷ୍ଠ-ନିବାରଣ ସଂଘ ‘ସମାଜ’ କର୍ତ୍ତୃପକ୍ଷଙ୍କୁ ଅନ୍ତରର ସହିତ ଧନ୍ୟବାଦ ଜଣାଉଅଛି । ପୁସ୍ତକର ବିକ୍ରୟଲବ୍ଧ ଧନ ସମସ୍ତ କୁଷ୍ଠ-ନିବାରଣ ସଂଘ କୁଷ୍ଠସେବା ନିମନ୍ତେ ବ୍ୟୟ କରିବ । ପୁସ୍ତକ ଖଣ୍ଡି ଲେଖିଲା ବେଳେ କୁଷ୍ଠରୋଗ ସମ୍ବନ୍ଧୀୟ ଉଲ୍ଲେଖଯୋଗ୍ୟ ବିଷୟଗୁଡ଼ିକ ଜାଣିବା ପାଇଁ ସଂଘର ସମ୍ପାଦକ ଡାକ୍ତର ଶ୍ରୀ ନାରାୟଣଚନ୍ଦ୍ର ପଟ୍ଟନାୟକ ଓ ସଂଘର ଜଣେ ବିଶିଷ୍ଟ ସଭ୍ୟ ଡାକ୍ତର ଆଇଜାକ ସାଆନ୍ତ ମୋତେ ଯଥେଷ୍ଟ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କଠାରେ ବିଶେଷ କୃତଜ୍ଞ । ନାଟକଟି ପ୍ରଥମେ ଅଭିନୟ କରି ଦେଖାଇବାପାଇଁ ଶ୍ରୀ ଅରୁଣଚନ୍ଦ୍ର ମୁଖାର୍ଜି, ଶ୍ରୀ ବିନୋଦଚନ୍ଦ୍ର ପଟ୍ଟନାୟକ ଓ ମୋହର ପୁତ୍ର ଶ୍ରୀ ରଘୁନାଥ ପଟ୍ଟନାୟକ ଯଥେଷ୍ଟ ଯତ୍ନ ଓ ପରିଶ୍ରମ କରିଥିବାରୁ ସେମାନଙ୍କୁ ଏହିରୂପ ସର୍ବସାଧାରଣ ମଙ୍ଗଳଜନକ କାର୍ଯ୍ୟରେ ଉତ୍ସାହିତ କରିବା ପାଇଁ ସେମାନଙ୍କର ନାମ ଏଠାରେ ଉଲ୍ଲେଖ କଲି । ପୁସ୍ତକ ଖଣ୍ଡି ଯେବେ ସର୍ବସାଧାରଣରେ ଆଦୃତ ହୁଏ ଏବଂ କୁଷ୍ଠରୋଗ ସମ୍ବନ୍ଧେ କେତେଗୁଡ଼ିଏ ନିତାନ୍ତ ଜ୍ଞାତବ୍ୟ ବିଷୟ ସର୍ବସାଧାରଣଙ୍କୁ ଜାଣିବା ପାଇଁ ସାହାଯ୍ୟ କରିପାରେ, ତେବେ ମୋହର ଲେଖିବାର ଶ୍ରମ ସାର୍ଥକ ମଣିବି ।

| ଟାଉନହଲ ରୋଡ଼, କଟକ, ତା ୭।୨।୧୯୫୦ | ଶ୍ରୀ ଭିକାରିଚରଣ ପଟ୍ଟନାୟକ |
|---|---|

# ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ

## ପୁରୁଷ

| | |
|---|---|
| ଲୋକନାଥ ମଙ୍ଗରାଜ | ଗ୍ରାମର ବଳିଷ୍ଠ ବ୍ୟକ୍ତି ଓ ପ୍ରେସିଡେଣ୍ଟ |
| ସଙ୍କର୍ଷଣ | ମଙ୍ଗରାଜଙ୍କ ଗୁମାସ୍ତା |
| ଚନ୍ଦ୍ରଶେଖର | ,, ପୁତ୍ର |
| ନନ୍ଦା | ,, ଭୃତ୍ୟ |
| ଢବ୍ୟଫିନ୍ଦ୍ର ଚଉଧୁରୀ | ,, ସମୁଦ୍ଧି |
| ପଦ୍ମନାଭ | ଗ୍ରାମର ଜଣେ ଶିକ୍ଷିତ ବ୍ୟକ୍ତି ଓ ମଙ୍ଗରାଜଙ୍କ କୁଟୁମ୍ବୀ ଭାଇ |

କପିଳ ବେହେରା· ଗ୍ରାମର ଜଣେ ଗୋପାଳ, ଝଲା କପିଳର ପୁତ୍ର, ଜିଲ୍ଲା ମାଜିଷ୍ଟ୍ରେଟ, ପେସ୍କାର, ପୋ: ଇନ୍‌ସ୍ପେକ୍ଟର, ସବ୍‌ଇନ୍‌ସ୍ପେକ୍ଟର, ଚୌକିଦାରଗଣ, ସିପାହୀଗଣ, ଗ୍ରାମବାସୀଗଣ, ପ୍ରାଇମେରୀ ସ୍କୁଲଶିକ୍ଷକଗଣ, ପରିଦର୍ଶକ ଦୁଇ ଜଣ, କୃଷ୍ଣନିବାସର ଭୃତ୍ୟଗଣ, ପଥିକ ଦୁଇ ଜଣ, ମଧ୍ୟସ୍ଥ ଓ ବାହାଦରିଆ ଦଲାଲ, କେଳା , ପ୍ରଚାରକଗଣ ।

## ସ୍ତ୍ରୀଗଣ

| | |
|---|---|
| ପ୍ରଭାବତୀ | ମଙ୍ଗରାଜଙ୍କ ପତ୍ନୀ |
| ନିରୁପମା | ମଙ୍ଗରାଜଙ୍କ ପୁତ୍ରବଧୂ ଚନ୍ଦ୍ରଶେଖରଙ୍କ ପତ୍ନୀ |
| ଝିଲାବୋଉ | କପିଳ ବେହେରା ସ୍ତ୍ରୀ ଏବଂ ପ୍ରତିବେଶୀ ରମଣୀଗଣ, କେଳୁଣୀ, କୃଷ୍ଣନିବାସର ଭୃତ୍ୟୀଗଣ। |



# ନିରୁପମା

## (ନାଟକ)



## ପ୍ରଥମ ଅଧ୍ୟାୟ

### ପ୍ରଥମ ଦୃଶ୍ୟ

ମଙ୍ଗରାଜଙ୍କ ଚଉପାଢ଼ୀ

( ଗୁମାସ୍ତା ଶଙ୍କର୍ଷଣ ଉପବିଷ୍ଟ—ବସ୍ତାନ ଫିଟାଇ ଲେଖାପଢ଼ିରେ ବ୍ୟସ୍ତ—ଚଉକିଦାରମାନେ ଦଣ୍ଡାୟମାନ )

୧ମ ଚୌକିଦାର—ଗୁମାସ୍ତା ବାବୁ, ପ୍ରେସିଡେଣ୍ଟ କେତେବେଳେ ବାହାରିବେ ?

ଶଙ୍କ—( ମୁଣ୍ଡ ହଲାଇ ହଲାଇ ଲେଖାପଢ଼ିରେ ବ୍ୟସ୍ତ )

୨ୟ ଚୌ—ଆନା ଘର କୋଣ ବାଟ । ବେଲ ଗଡ଼ିଗଲେ ଦାରୁଗା ବାବୁ ତମ୍ବି କରିବେ ।

ଶଙ୍କ—ଓହୋ ! ତେମେ ଆଉ ରଖିଥେଇ ଦବନାହିଁ । ବାବୁଙ୍କ ପୁଅ ବାହାଘର ଗଡ଼ବଡ଼ ସବନାହିଁ, କୁଣିଆ ମଇନ ଯିବା ଆସିବା ଲଗି ରହିଛୁ । କାଲି ରାତରେ ଡେର ହୋଇଥିଲି । ଉଠିଛନ୍ତି ଡେରରେ, ଥୟ୍ ଧର ଏଇଖିଣି ଆସିଯିବେ । ( ଦୂରରୁ ମଙ୍ଗରାଜଙ୍କ କଣ୍ଠଶବ୍ଦ ଶୁଣି ବାମପାର୍ଶ୍ୱକୁ ଅନାଇଁ ) ହେଇ ତ ଆଇଲେଣି ।

( ମଙ୍ଗରାଜଙ୍କର ପ୍ରବେଶ, ଚଉକିଦାରମାନଙ୍କର ଅଭିବାଦନ )

ମଙ୍ଗ—ଗୁମାସ୍ତା ! ଗୁମାସ୍ତା !

ଶଙ୍କ—ଆଜ୍ଞା ! ଆଜ୍ଞା !

ମଙ୍ଗ—ତେମେ ଧରବଟି ଆଗେ ହପ୍ତାଟା ଗୁଲିଯାଉ ।

ଶଙ୍କ—ଆଜ୍ଞା, ଆଜ୍ଞା ( କାଗଜ କଲମ ଧରି ଲେଖିବା ପାଇ ପ୍ରସ୍ତୁତ )

ମଙ୍ଗ—ଲେଖ ଲେଖ ।

ଶଙ୍କ—ଆଜ୍ଞା !

ମଙ୍ଗ—ଧାନ ବୃକ୍ଷମାନଙ୍କର ବର୍ତ୍ତମାନ ଶୈଶବାବସ୍ଥା । ସେମାନଙ୍କର ଆହାର ନିମନ୍ତେ ଜଳର ବିଶେଷ ପ୍ରୟୋଜନ । ବର୍ଷା ଆଦୌ ହେବାକୁ ନାହିଁ । ଜଳାଭାବରୁ ଧାନ ବୃକ୍ଷମାନଙ୍କର ସ୍ୱର୍ଗପ୍ରାପ୍ତି ହେବା ବିଶେଷ ସମ୍ଭବ ।

( ଗୁକର ନନ୍ଦାର ପ୍ରବେଶ )

ନନ୍ଦା—ଆଜ୍ଞା ! ପଶୁ ସାହାବ ଆସିଛନ୍ତି । କହିଗଲେ ଯେ ସେ ଯାଉଛନ୍ତି ଗାଁର ସବୁ ପଶୁମାନଙ୍କୁ ଆଗେ ଦେଖିସାର ଶେଷକୁ ଆପଣଙ୍କୁ ଦେଖିବାକୁ ଆସିବେ । ( ପ୍ରସ୍ଥାନ )

ମଙ୍ଗ—ଗୁମାସ୍ତା !

ଶଙ୍କ—ଆଜ୍ଞା ! ଆଜ୍ଞା !

ମଙ୍ଗ—ତାଙ୍କ ପାଇଁ ବନ୍ଦୋବସ୍ତ କରିବାକୁ ହବ ।

ଶଙ୍କ—ଆଜ୍ଞା ହଁ, ସେଯବୁ ସଜିଲ ଅଛୁ । ଆଗେ ହପ୍ତାଟା ଗୁଲିଯାଉ ।

—ନିରୁପମା—

ମଙ୍ଗ—ଆଚ୍ଛା ! ହଁ, କଣ ହେଲ୍‌ଟି ?

ଶଙ୍କ—ଧାନବୃକ୍ଷମାନଙ୍କର ସ୍ୱର୍ଗପ୍ରାପ୍ତି ହେବା ବଶେଷ ସମ୍ଭବ ।

ମଙ୍ଗ—ଆଚ୍ଛା ଆଚ୍ଛା ଲେଖ—ବାରିକମିଷ୍ଟୀ ବିଭାଗଙ୍କର କରନାଳୀମାନଙ୍କରେ ଦେଉଥିବା ସୋଠରେ ଯେଉଁ ଜଳ ଆସୁଛି, ତାହାର ଅର୍ଦ୍ଧେକରୁ ଅଧିକ ଜଳ ସୋଠ ମୁହଁରେ ବେଙ୍ଗ ଶିଶୁମାନେ ପାନ କରି ଶେଷ କରି ଦେଉଛନ୍ତି । ସରକାରଙ୍କୁ ଜଳକର ଦେଉଥିବା କୃଷୀ ପ୍ରଜାମାନେ ସେମାନଙ୍କର କୃଷିକ୍ଷେତ୍ର ପାଇଁ ଉପଯୁକ୍ତ ପରିମାଣରେ ଜଳ ପାଇପାରୁ ନାହାନ୍ତି; ତେଣୁ ସେମାନେ ଖୁବ ବ୍ୟସ୍ତ ହେଉଛନ୍ତି । ବେଙ୍ଗ ଶିଶୁମାନେ ଯେପରି ଜଳପାନ ନ କରିବେ ସେଥିନିମନ୍ତେ ମହାମାନ୍ୟ ସରକାରଙ୍କ ତରଫରୁ ଜରୁରି ପ୍ରତିକାର କରିବା କାରଣ ବାରିକମିଷ୍ଟୀ ବିଭାଗଙ୍କ ପ୍ରତି ତାକିଦ୍ କରାଯିବା ଆବଶ୍ୟକ । ତା ନ ହେଲେ କୃଷିହାନି ଘଟିବା ସୁନିଶ୍ଚିତ ।

( ନନ୍ଦାର ପ୍ରବେଶ )

ନନ୍ଦା—ଆଜ୍ଞା, ଫେର ଚଷା ସାହେବ ଆସିଲେଣି । ବଲ୍ ଆଡ଼କୁ ଗଲେ ତେଣୁ ଫେରି ଏଠାକୁ ଆସିବେ । ( ନନ୍ଦାର ପ୍ରସ୍ଥାନ )

ମଙ୍ଗ—ଗୁମାସ୍ତା ! ତାଙ୍କ ପାଇଁ ?

ଶଙ୍କ—ଆଜ୍ଞା ସବୁ ଠିକ ଅଛି । ହସ୍ତାଟା ଆଗେ ବଦା କରିଦଏଁ ।

ମଙ୍ଗ—ହଁ ହଁ, ଲେଖ ଲେଖ—ଏ ହସ୍ତାରେ ଆମ୍ଭ ଇଲାକାରେ—

ମନୁଷ୍ୟ—ଜନ୍ମ ନାସ୍ତି, ମୃତ୍ୟୁ ନାସ୍ତି ।

ପଶୁ—ଗୋ-ଜନ୍ମ ନାସ୍ତି, ମୃତ୍ୟୁ ପାଞ୍ଚ ।

ଛେଳି—ଜନ୍ମ ସାଢ଼େ ତିନ, ମୃତ୍ୟୁ ସାଢ଼େ ଚାରି ।

ଶଙ୍କ—ଆଜ୍ଞା ! ସାଢ଼େ ତିନ ସାଢ଼େ ଚାରି ?

ମଙ୍ଗ – କଣ ବୁଝିପାରିଲ ନାହିଁ ? କହେ। କଣ୍ଡୁରୀ ଜେନାର ଛେଳିଟା
ଯେ ଗୋଟାଏ ଛୁଆ ଗଭ୍ଭରୁ ପକେଇଥିଲ, ସେଇଟା କୁଆଡ଼େ
ଲେଖାଯିବ ? ଅଧେ ଜନ୍ମ ଆଡ଼େ ଓ ଅଧେ ମୃତ୍ୟୁ ଆଡ଼େ ।

ଶଙ୍କ—ହୁଁ ଆଜ୍ଞା, ଏଥର ବୁଝିଲି ।

ମଙ୍ଗ—ଆଉ ଲେଖ ମେଣ୍ଢା-ଜନ୍ମ ଆଠ, ମୃତ୍ୟୁ ସାତ । (ନନ୍ଦାର ପ୍ରବେଶ)

ନନ୍ଦା—ଆଜ୍ଞା ! କୁଷ୍ଠରୋଗୀଙ୍କ ସାହେବ ପହଞ୍ଚିଲେଣି ।

ମଙ୍ଗ—ହୁଁ, ଯାଉଛୁ । ସରିଲାଣି । ବସିବାକୁ ଜାଗା ଦେ । କହ ଯାଉଛୁ ।
(ନନ୍ଦାର ପ୍ରସ୍ଥାନ ) ଲେଖ ଲେଖ । କୁକ୍କୁଟ—ଏ ହପ୍ତାରେ ଜନ୍ମ
ବାର ମୃତ୍ୟୁ ପନ୍ଦର । ଭ୍ରୂଣହତ୍ୟାର ପରିମାଣ ଦିନକୁଦିନ ବଢ଼ି ବଢ଼ି
ଚାଲିଛି । ଏଥିରେ ଉଚ୍ଚ ବର୍ଣ୍ଣର ହିନ୍ଦୁମାନେ ସମସ୍ତଙ୍କୁ ଟପି ଗଲେଣି ।

ଶଙ୍କ—ଆଜ୍ଞା ! ଭ୍ରୂଣହତ୍ୟା ! ଉଚ୍ଚବର୍ଣ୍ଣ ହିନ୍ଦୁ ?

ମଙ୍ଗ— କଣ ବୁଝି ପାରୁନା ? କୁକୁଡ଼ା ଅଣ୍ଡା ଗୁଡ଼ିକ ଭାଙ୍ଗିବା ଭ୍ରୂଣହତ୍ୟା
ନୁହେଁ କି ? ହିନ୍ଦୁ—

ଶଙ୍କ—ହୁଁ ଆଜ୍ଞା ହୁଁ, ଠିକ କଥା, ବୁଝିଲି ବୁଝିଲି ।

ମଙ୍ଗ—ଲେଖ ଏଥର—କୃଷିବିଭାଗ, ପଶୁବିଭାଗ ଓ କୁଷ୍ଠରୋଗ ବିଭାଗର
ସାହେବମାନେ ବରାବର ଆସି ଗ୍ରାମର ଲୋକଙ୍କୁ ନାନା ବିଷୟ
ବୁଝାଉଛନ୍ତି । ଗ୍ରାମମାନଙ୍କୁ କୁଷ୍ଠରୋଗ ବିଭାଗର ଡାକ୍ତର ଗଲାକ୍ଷଣି
ଅନେକ ଲୋକ ଏଣେତେଣେ ଲୁଚୁଛନ୍ତି । ଡାକ୍ତରବାବୁ ସମସ୍ତଙ୍କୁ
ଦେଖିପାରୁ ନାହାନ୍ତି । ଏହାର ପ୍ରତିକାର ଆବଶ୍ୟକ । ଇତି ।
ଦିଅ ଏଥର ହପ୍ତାଟା ପଠେଇ ।

ଶଙ୍କ—ହୁଁ ଆଜ୍ଞା ! (ମଙ୍ଗରାଜଙ୍କର ଦସ୍ତଖତ କରାଇ ଚୌକିଦାରମାନଙ୍କୁ
କାଗଜ ପ୍ରଦାନ । ଚୌକିଦାରମାନଙ୍କର ଅଭିବାଦନ ଓ ପ୍ରସ୍ଥାନ )

ମଙ୍ଗ—ଚାଲ ଏଥର ଯେ ସବୁ ଆସିଲେଣି ତାଙ୍କ ଖବର ବୁଝିବା ।

ଶଙ୍କ—ହୁଁ ଆଜ୍ଞା, ଏଥର ତାଙ୍କ ଖବର ବୁଝିବା । ଚାଲିବା ହେଉ ।
(ଉଭୟଙ୍କର ପ୍ରସ୍ଥାନ)

—[illegible]—

# ଦ୍ୱିତୀୟ ଦୃଶ୍ୟ

## ରାଜପଥ

( ଚୌକିଦାରମାନଙ୍କର ପ୍ରବେଶ )

୧ମ ଚୌ—ଆଜି କପାଳରେ କି ଯୋଗ ଅଛି କେଜାଣି ! ଏଇଠୁ ତ ବାହାରୁଁ ବାହାରୁଁ ପହରଡ଼େ ଦନ ହେଲଣି । ପହଞ୍ଚୁ ପହଞ୍ଚୁ ଦ୍ୱିପହର ଗଡ଼ିଯିବ । ଦାରୁଗା ବାବୁ ତ ନାଚିବେ ପଡ଼ି ।

୨ୟ ଚୌ—ଆମେ କଣ କରିବା, ପ୍ରେସିଡେଣ୍ଟ ତ ହୁକୁମ ଦେଲେ ଏତେ ବେଳକେ ।

୧ମ ଚୌ—ଆରେ ସେ କଥା କିଏ କାହିଁ ଶୁଣିବ ? ସରଗରୁ ନ ଖସୁଣୀ ନାହିଁ ନା ବଡ଼ଲୋକଙ୍କ ଉତ୍ତର ନାହିଁ । ପ୍ରେସିଡେଣ୍ଟ ଉଚ୍ଚୁର କଲେ ବୋଲି କହିବା ଯାକେ ଆଗେ ଯାଉଛି ? ତେମେ ଶଳା ଏ କାହିଁକି ଏତେ ଡେରି କଲ ?

୩ୟ ଚୌ—ହଁ ହେ ମୁରୁବିମାନେ ତ ଦେଖୁଥାଇଁ ବଡ଼ ବଡ଼ ଯାହା କରିବେ, ସେଇ ହେଲା ଧରମ; ଗରିବ ଯାହା କରିବେ ସେଇ ହେଲା ପାପ ।

୪ର୍ଥ ଚୌ—ହଉ ଚାଲ ଯିବା ତ ଆଉ କଅଣ; ଦ୍ୱିପଦ ଗାଳି ଦେଲେ ଦେବେ । କଅଣ ହେଇଯିବ । ଗରିବଙ୍କ ଆଖି ଆଖି ନୁହେଁ କି ଗରିବଙ୍କ କାନ କାନ ନୁହେଁ । ସବୁବେଳେ ତ ଦେଖୁଥାଇଁ , ସବୁବେଳେ ତ ଶୁଣୁଥାଇଁ । ଆମ୍ଭେ ନ ଜାଣି କଅଣ କୋଉଠି କିଛି ଅଛି ? ହଜାର ହଜାର ମୁଅମୁହଁରେ କୁଆଡ଼େ ବୋହିଯାଉଛି । ଗରିବଙ୍କ ବେଲଙ୍କୁ ଲୁଞ୍ଚି ମାଛି ପରଖ । ଶୁଣି ଶୁଣି ତ କାନ ବଧିର ହୋଇ ସାରିଛି । ଆଉ ଗାଳିକି ଡରିବା କଅଣ ? ଚାଲ ଚାଲ, ଗୀତ ଗାଇ ଗାଇ, ଚାଲ ବାଟ ସରିଯିବ ଯେ !

—ନିରୁପମା—

ଗୀତ

( କାମୋଦୀ )

( ଆମେ ସବୁ ) ସରକାରୀ ଚଉକିଆ
( ଆମର ) କାହାକୁ ପରୁଆ କିଆ
କାହାର ବାପର ବେଠିଆ ନୋହୁ ହେ ନୋହୁ ତ କାଗିରଖିଆ ॥
(ଆମର) ଦରେସ ପଗଡ଼ି କଲା
ସରକାରଙ୍କର ସୁନାପୁଅ ଆମେ ଦାରୁଗା ବାବୁଙ୍କ ଶଳା ॥
(ଆମ) ଅଣ୍ଟାରେ ଚମଡ଼ା ପେଟି
ଖୁର ଖୁସି ଲଗେ ଜମାଦାର ବାବୁ ଶୋଧି ଗଲେ ଯୋରୁ ବେଟି ॥
ଦେଶର ଖବରଦାର
ଆମର ହାତରେ ଆମକୁ ଡରନ୍ତି ସାହୁ ଜମିଦାର ଦାସ ॥
ଜନମ ମରଣ ଖାତା
ଆମର ହାତରେ ଯାହା ଟିପିଦେବୁଁ କାଟି ନ ପାରବେ ଧାତା ॥
ଟେ଼ୈରଯାକ ଆମ ଭାଇ
ଆମ ସଙ୍ଗେ ବାଦ ଯେ କରବ ଜାଣ ଠାବ ତାର କାହିଁ ନାହିଁ ॥
ନ ମଣିବ ଆମେ ଶ୍ରେଷ୍ଠ
ଆମ ରିପୋଟରେ ସବୁ ସୂତା ଖିଅ ହୋଇଯାଏ ଏଡ଼େ ମୋଟ ॥

( ପ୍ରସ୍ଥାନ )

—ନିରୁଦ୍ଧ—

# ୩ୟ ଦୃଶ୍ୟ

## କକ୍ଷ

(ପ୍ରଭାବତୀ ଓ ମଙ୍ଗରାଜ)

ମଙ୍ଗରାଜ—ଆଉ ବ୍ୟସ୍ତ ହେଲେ କଣ ହବ ? ଆମ କର୍ମର ଦୋଷ କହିବା ! ମୁଁ ଆଉ ଗୋଟିଏ ପାତ୍ରୀ ଖୋଜୁଛି । ଯେତେ ଶୀଘ୍ର ସମ୍ଭବ ହୋଇପାରିବ, ପୁଅକୁ ଆଉ ଗୋଟିଏ ବାହା କରେଇବାକୁ ପଡ଼ିବ ।

ପ୍ରଭା—ଏତେ ବୁଦ୍ଧି ସୁଦ୍ଧି, ଏତେ ଜାତକପତ୍ର ମିଳାଇ ଜ୍ୟୋତିଷ ପଣ୍ଡିତଙ୍କୁ ପଚାରି ବୋହୂଟିଏ ଆଣିଲୁ । ଆମ କପାଳକୁ ତାର ହେଲା କୁଷ୍ଠ-ରୋଗ । ବାପ ମା ଏମିତି ଠକିବେ ବୋଲି କିଏ ଜାଣିଥିଲା ? ଆମ ବେକରେ ଛନ୍ଦି ଦେଇ ଆପେ ପାରି ପାଇଯିବେ ବୋଲି ସିନା ଏତିକ କଲେ !

ମଙ୍ଗରାଜ—ଛାଡ଼ ! ସେ ସବୁ ଯେତେ ଭାବିବ, ତେତେ ମନ ବେଶୀ ଖରାପ ହେବ । ଏଇଥିଣି ବାହାଘର କାମ ସରି ନାହିଁ । କେତେ ଭଦ୍ର-ଲୋକଙ୍କୁ ନିମନ୍ତ୍ରଣ କରା ହେଉଛି । ସେମାନେ ଆସି କେମିତି ମୁରୁକ୍ଷୁରେ ଫେରି ଯାଆନ୍ତୁ । ଏକଥା ତାଙ୍କ କାନରେ ଯେପରି ନ ପଡ଼ୁ । ସେତିକେ ଜଗିବାକୁ ହବ । କାହାରିକୁ କିଛି କହ ନା । ଡାକ୍ତରଙ୍କୁ ଖବର ଦେଇଛି ସେ ଆସି ଦେଖି ଯାଆନ୍ତୁ । ଛଅ ଘଣ୍ଟେ ଭଲ ହେଲେ ଭଲ ହୋଇ ଯାଇପାରେ । ବୋହୂଟିର ଚିକିତ୍ସାର ବ୍ୟବସ୍ଥା କରିବାକୁ ପଡ଼ିବ । ତା କପାଳରେ ଯାହା ଥିବ ! ଏଣେ ପୁଅକୁ ବି ଶୀଘ୍ର ଆଉ ଗୋଟିଏ ବାହା କରେଇବାକୁ ହେବ । ପୁଅ ମନ ଭାରି ଖରାପ—ହବାର କଥା । ସେ ସିନା କିଛି

କହୁନାହିଁ; ଆଉ ଗୋଟିଏ ବୋହୂ ନ ଆଣିବା ଯାଏ ତା ମନ ବଦଳିବ ନାହିଁ । ସେଥିପାଇଁ ମୁଁ ଖୁବ୍ ଲାଗିପଡ଼ିଛି, ଖୋଜୁଛି । ବର୍ତ୍ତମାନ ବେଳଟା କେମିତି ଧୀରସ୍ଥିର ଭାବରେ ସମ୍ଭାଳିଯିବା ଦରକାର ।

ପ୍ରଭାବତୀ—ହଁ ଯେମିତି ହେବ ଆଉ କଣ କରିବା । କପାଳ କଥା ତ ।

(ମଙ୍ଗରାଜଙ୍କର ପ୍ରସ୍ଥାନ)

(ପଡ଼ୋଶୀ ମହିଳାମାନଙ୍କ ପ୍ରବେଶ)

୧ମ-ପ- ମହିଳା—ଶିଖର ବୋଉ ! ଆମେ ସବୁ ବୋହୂ ଦେଖି ଆସିଥିଲୁ । ତୋ ମନ ଯେମିତି ବୋହୂଟି ପାଇଲୁ ସେମିତି ।

୨ୟ-ପ-ମହିଳା—ମନନାଖି ବୋହୂଟିଏ ପାଇଛୁ । ଗୋଟିକ ଗୁଡ଼ଲରେ ଗଢ଼ା ! ଟିକିଏ କଣ୍ଟ ବାଛିବାକୁ ନାହିଁ । କେଡ଼େ ସଗୁଣା !

ପ୍ରଭା—ହଁ ଠାକୁରେ ଯାହା ଦେଲେ ।

୩ୟ-ପ-ମହିଳା—ଘରଣୀ ଘରର ଝିଅ । ରୂପ ଯେମିତି, ଗୁଣ ସେମିତି ।

୪ର୍ଥ-ପ-ମହିଳା—କିଛି ବୋଲି କିଛି ବାଛିବାକୁ ନାହିଁ । ସୁନା ଖଣ୍ଡିକା-ଟିଏ ତ । ଠାକୁରେ ତାଙ୍କୁ ପରମାୟୁ ଦେଇ ଥାଆନ୍ତୁ । ତୁ ଏମିତି ବସିଥା । ତୋ କାଚ ବଜର ହୋଇଥାଉ । ପୁଅ ବୋହୂଙ୍କ ଅଳଦ୍ଦୋଳ ଦେଖିଥା ।

୧ମ-ପ-ମହିଳା—ଦିଆନିଆ ବି ଆଛା କରିଛି । ସମୁଦୁଣୀର ତୋର ଆଖି ବଡ଼ । କୋଉଥିରେ ଟିକିଏ ବାଛିବାକୁ ନାହିଁ । ବନ୍ଧୁଟିଏ ବି ପାଇଛୁ ଭଲ । ଆମେ ଯାଉଛୁଁ ।

(ସମସ୍ତଙ୍କର ପ୍ରସ୍ଥାନ)



## ୪ର୍ଥ ଦୃଶ୍ୟ

( ଉଦ୍ୟାନ ପ୍ରାଚୀର )

(ନିରୁପମା ଓ ଚମ୍ପା—ନିରୁପମାର ଚମ୍ପାକୁ ପତ୍ର ପ୍ରଦାନ)

ନିରୁପମା—ଚମ୍ପା, ତୁ ନେଇଯା ଚିଠିଟା ଖଣ୍ଡିକ ବୋଉକୁ ଦବୁ, ଆଉ କାହାକୁ ଦେଖାଇବୁ ନାହିଁ ।

ଚମ୍ପା—ନାହିଁ ମୁଁ କାହିଁକି କାହାକୁ ଦେଖାଇବି । ଆଉ କହିବି କଣ ? ମତେ ଯେବେ କିଛି ପଚାରିବେ ?

ନିରୁ—ବୋଉ ପଚାରିଲେ ଯାହା ଦେଖୁଛୁ ତାହା କହିବୁ । ଆହୁରି କହିବୁ ଅଧିକ ବିଳମ୍ବ କଲେ ମତେ ଆଉ ପାଇବ ନାହିଁ । ଆଉ କେହି କିଛି ପଚାରିଲେ କହିବୁ ସବୁ ଭଲ ।

ଚମ୍ପା—ହଉ ତେବେ ଯାଉଛି । ଚିଠି ଦେଇ ଓପରଓଳି ଫେରି ଆସିବି । (ଚମ୍ପାର ପ୍ରସ୍ଥାନ)

ଗୀତ

( ରାଗ—କଲ୍ୟାଣୀ, ତାଳ ତ୍ରିପଟା )

କାହାଗେ କହିବି ମୋ ହୃଦ-ବେଦନା
ଜାଣିଡି ନ ଥିଲି ମୁଁ ଏତେ ଯନ୍ତ୍ରଣା ।
ସୁଖ-ସଂସାରରେ ମୁଁ ହେଲି ବିଷାଦ
ମୋ ସଙ୍ଗେ କାହାରି ନାହିଁ କିଛି ବାଦ ।
ଅମୃତଭଣ୍ଡ ରେ ବିଷ କଣା ପରି
ସମସ୍ତଙ୍କୁ କରି ଦେଲି ମୁଁ ବିମନା ।
ନିଜ ପୂର୍ବଜନ୍ମ କର୍ମଭୋଗ ପାଇଁ
ଜାଣୁଛି ଜଗତେ ସିନା ଜନ୍ମ ପାଇ,
ମୋ କର୍ମଫଳରେ କମ୍ପା ଭାଗୀ ହେବେ
ଆନ ଜନେ କରି ନ ହୁଏ କଳନା ।

—ନିରୁପମା—

ଜାଣୁଛି ଏ ଜୀବ ଥାଇ ଫଳ ନାହିଁ
ତୃଚ୍ଛା ଖେଳାଇବ କାହାକୁ କମ୍ପାଇ
ଶାନ୍ତ-ନିକେତନେ ଅଶାନ୍ତ ମୁଁ ରହୁ
ନ ପୂରିବ କେବେ କାହାର କାମନା ।।

(ପ୍ରଭାବତୀଙ୍କର ପ୍ରବେଶ)

ପ୍ରଭା—ଏଁ ଲୋ ମା ! ମୁଁ ସେତେବେଳୁ କହି ଗଲିଣି, ଗାଧେଇନଉଁ ?
ଯା ଯା ଗାଧେଇପଡ଼ । ମୋ ମା, ମୋ ରାଣୀ, ଯା ଗାଧେଇ
ପଡ଼, ଭାତ ହଣ୍ଡା ଶୁଖିଯିବ, ଏତେ ବେଳ ହେଲାଣି ।

ନିରୁ—ହଁ ଯାଉଛି ।

ପ୍ରଭା—ଯା ଯା, ତୁ ଏତେ ବ୍ୟସ୍ତ ହୁଅ ନା । ସେ ଯୋଗଜାଣିଆ ଡାକ୍ତରଟା
ଆମ ଘରେ ଏତେ ନାଟ ଲଗେଇ ଦେଇଗଲା । ଭଲ ହୋଇଯିବ,
ବ୍ୟସ୍ତ ହୁଅନା ।

ନିରୁ—ଡାକ୍ତରଙ୍କୁ କାହିଁକି ଗାଳି ଦଉଛନ୍ତି । ସେ ତ ଆମ ଭଲକୁ ସତ
କଥା ସବୁ କହିଲେ ।

ପ୍ରଭା—ହଁ ଭଲକୁ ନୁହେଁ କି; କହୁଛି ତ ଭଲ ହୋଇଯିବ । ଯେବେ ଭଲ
ହୋଇଯିବ ଜାଣୁଛି. ତେବେ ତ ଔଷଧ ଦେଇଥାନ୍ତି, ଭଲହୋଇ
ଯାଇଥାନ୍ତା । ଏ ରୋଗ ସେ ରୋଗ ଏଣୁତେଣୁ ଏତେ କଥା
ଗୁଡ଼ା ଖୋଲୁଥିଲା କାହିଁକି ? ତୋ ବାପା ତ ଟିକଏ ଡରକୁଳା
ମଣିଷ । ଏଣୁତେଣୁ ଗୁଡ଼ା ଶୁଣି ଭ୍ରମନିଆ ହୋଇ ପଡ଼ିଲେ ।

ନିରୁ— ନାହିଁ, ଡାକ୍ତର ଭଲ କଲେ କହିଲେ ନା । ସେ ନ କହିଥିଲେ
ଆମେ କଣ କେହି ଏତେ ସାବଧାନ ହୋଇଥାନ୍ତେ ! ମୁଁ ତ ଜଣେ
ରୋଗୁଛି; ଅସାବଧାନ ହୋଇଥିଲେ କେଜାଣି ଆଉ କେତେ କାହା
ଦେହକୁ ଚାଲେ ଉଡ଼ିଥାନ୍ତା । ସେ କଣ ଭଲ ହୋଇଥାନ୍ତା ?

ପ୍ରଭା— ହଁ ଡାକ୍ତର କହିଲେ ଭଲ କଲେ । ତୁ ଚାଲ ଚାଲ ଗାଧୋଇପଡ଼ ।

(ପ୍ରଭାବତୀଙ୍କର ପ୍ରସ୍ଥାନ)

— ନିରୁପମା—

## ୫ମ ଦୃଶ୍ୟ

### (ଚନ୍ଦ୍ରଶେଖରଙ୍କ କଟକ ବସାଘର)

(ଚନ୍ଦ୍ରଶେଖରଙ୍କ ପୁସ୍ତକପାଠ, ବନ୍ଧୁ ଗୋଲକବିହାରୀଙ୍କ ପ୍ରବେଶ—ଚନ୍ଦ୍ରଶେଖର ଉଠି ଅଗ୍ରସର, ପରସ୍ପର ପରସ୍ପରଙ୍କୁ ଆଲିଙ୍ଗନ । )

ଚନ୍ଦ୍ର—ଭାଇ ଗୋଲକ ! ଅନେକ ଦିନ ରହିଗଲୁ ତ, ଅଇଲୁ କେବେ ?

ଗୋଲକ—ମୁଁ ଭାଇ କାଲି ରାତରେ ପହଞ୍ଚିଲି । ଯଦୁ ପାଖରୁ ସବୁ ଶୁଣିଲିଣି । ତୋର ଗୋଟାଏ ଏପରି ବିପଦ କଥା ଶୁଣି ମନ ବଡ଼ ବ୍ୟସ୍ତ ହେଲା ।

ଚନ୍ଦ୍ର—(ହସି ହସି) କାହିଁକି ରେ ? ବ୍ୟସ୍ତ ହେବାର କିଛି କାରଣ ନାହିଁ ତ । ଯଦୁ ମୋ ସ୍ତ୍ରୀର ରୋଗକଥା କହିଥିବ । ସେଥିପାଇଁ ମୁଁ ତ ଆଦୌ ବ୍ୟସ୍ତ ନୁହେଁ । ତୁ ବ୍ୟସ୍ତ ହେଲୁ କାହିଁକି ? ରୋଗଟା ହୋଇଛି କଅଣ ଭଲ ହୋଇଯିବ ନାହିଁ ? ଦେହ ଥିଲେ ରୋଗ ଲାଗି ରହିଥାଏ ।

ଗୋଲକ—କଣ କହୁଛୁ ! ଏ ରୋଗଟା ସହଜରେ ଭଲ ହୁଏ ନା ! ନିଜେ ଟିକିଏ ସାବଧାନ ରହିବୁ—ଛୁଆଁ ଛୁଇଁରେ ।

ଚନ୍ଦ୍ର—ଭାଇ ଗୋଲକ, ତତେ ମୁଁ ଆଉ ବୁଝେଇବି କଣ ! ମୁଁ ଏଥିରେ ଦୁଃଖିତ ହେବା ତେଣିକି ଥାଉ ଆପଣାକୁ ଭାଗ୍ୟବାନ୍ ମନେ କରୁଛି । ଆମେ ଏତେ ପାଠସାଠ ପଢ଼ିଲୁ, ଖାଲି ଗୁଡ଼ାଏ ବହି ଘୋଷି ଘୋଷି ପଶୁ ପାଲଟି ଗଲୁ । ଆମ ଦେଶର ଅବସ୍ଥା, ଆମ ଘରର ଅବସ୍ଥା, ଆମ ନିଜ ନିଜର ଭବିଷ୍ୟତ ବୁଝିବା—ଥାଉ ତେଣିକି—କିଛି ବୋଲି କିଛି ଜାଣିବାର ପ୍ରବୃତ୍ତି ମଧ୍ୟ ହରାଇ ସାରିଲୁଣି ।

—ନିରୁପମା—

ଗୋଲକ—କଣ କରିବା ପାଇଁ କରିବା ପାଇଁ, ଯାହା ଲଜ୍ଜାଦେଲେ ତା ଘୋଷିବାକୁ ପଡ଼ିଲା ।

ଚନ୍ଦ୍ର—କୁଷ୍ଠ ରୋଗଟା ଆମ ଦେଶରେ କ୍ରମେ ମାଡ଼ି ମାଡ଼ି ଗ୍ଲଲିଛି । ଓଡ଼ିଶାରେ କୁଷ୍ଠରୋଗୀଙ୍କ ସଂଖ୍ୟା ବର୍ତ୍ତମାନ କେତେ ହେଲାଣି ଜାଣୁ ? ବର୍ତ୍ତମାନ ୧୫୦୦୦ରୁ ଊର୍ଦ୍ଧ୍ୱ । ଏ ରୋଗ ଗ୍ରାମେ ଗ୍ରାମେ ମାଡ଼ି ଗ୍ଲଲିଛି କାହିଁକି ? କଣ କଲେ ବନ୍ଦ ହେବ, ରୋଗଟାର ହାଲଗ୍ଲଲ ପ୍ରତ୍ୟେକଙ୍କର ଜାଣିବା ଉଚିତ ନୁହେଁ କି ? ମୁଁ ମୋ ସ୍ତ୍ରୀଠାରେ ରୋଗଟା ଦେଖିବାରୁ ସିନା ଏ ରୋଗର ହାଲଗ୍ଲଲ ସବୁ ଜାଣିବାକୁ ଚେଷ୍ଟା କଲି; ସବୁ ବୁଝିଲି । ବର୍ତ୍ତମାନ ମନ ହେଲାଣି ଏହାର ପ୍ରତିକାର ପାଇଁ କିଛି ହେଲେ ଚେଷ୍ଟା କରିବି । ମୋର ବିଶ୍ୱାସ ହେଲାଣି ମୋ ସ୍ତ୍ରୀ ଆରୋଗ୍ୟ ହୋଇଯିବ । ମୁଁ ଯେତେ ଦୂର ପାରେଁ, ରୋଗଟା ଯେପରି ଦେଶରେ ଅଧିକ ନ ମାଡ଼ିବ, ସେହି ଚେଷ୍ଟାରେ ଲଗି ପଡ଼ିବି । କିଛି ହେଲେ ତ ହେବ ।

ଗୋଲକ—ହଁ - ନ ହେବ କାହିଁକି, ଲାଗିପଡ଼ିଲେ ଅବଶ୍ୟ ଫଳ ହେବ ।

ଚନ୍ଦ୍ର—ସେଇଥି ପାଇଁ କହୁଛି ମୁଁ ଭାଗ୍ୟବାନ୍ । ମୋ ସ୍ତ୍ରୀର ଏ ରୋଗ ନ ହୋଇଥିଲେ ମୁଁ ବୋଧହୁଏ ଏ କଥା କେବେ ଭାବି ନ ଥାନ୍ତି । ନିଜର ମଙ୍ଗଳ, ଘରର ମଙ୍ଗଳ, ପରର ମଙ୍ଗଳ ଓ ଦେଶର ମଙ୍ଗଳ ପାଇଁ ବର୍ତ୍ତମାନ ଯାହା କରିବି ବୋଲି ଭାବୁଛି,ତା ତ ଆଉ କେବେ ଭାବି ନ ଥାନ୍ତି ।

ଗୋଲକ—ଭାଇ ଶିଙ୍କର, ତୋର ଧୈର୍ଯ୍ୟକୁ ମୁଁ ପ୍ରଶଂସା କରୁଛି । ତୋର ଧୈର୍ଯ୍ୟ ଅତି ଅସାଧାରଣ, ତୋର ଆକାଙ୍କ୍ଷା ଖୁବ୍ ବୃହତ୍, କଳ୍ପନା ଖୁବ୍ ସାଧୁ; କିନ୍ତୁ ଦେଶର କୁଷ୍ଠନିବାରଣ ପାଇଁ ତୁ କଅଣ କରିପାରିବୁ ଭାବୁଛୁ, କହିଲୁ ?

—ନିଷ୍କ୍ରମ—

ଚନ୍ଦ୍ର—ମୁଁ ଆଉ କିଛି ପାରେଁ ବା ନ ପାରେଁ, ଅମ ଦେଶର ସାଧାରଣ ଲୋକେ କୁଷ୍ଠରୋଗ ସମ୍ବନ୍ଧେ ଯେତକ ଜାଣିବା ଆବଶ୍ୟକ, ସେତକ ତ ହେଲେ ତାଙ୍କୁ ଜଣାଇ ଦେବାକୁ ଚେଷ୍ଟା କରିପାରିବ; ଆମେ କୁଷ୍ଠରୋଗୀ ଦେଖିଲେ ତାଙ୍କୁ ଘଣା କରୁଥାଉଁ—ଡରୁଥାଉଁ—ସଂକ୍ରାମକ ରୋଗ—କାଳେ ଡେଇଁ ପଡ଼ିବ ପରି ! ପ୍ରକୃତରେ ସବୁ ରୋଗୀଙ୍କ ରୋଗ ସଂକ୍ରାମକ ନୁହେଁ; ଶତକରା ୮୪ ଜଣଙ୍କର ରୋଗ ସଂକ୍ରାମକ ନୁହେଁ । କେବଳ ୧୬ ଜଣଙ୍କର ରୋଗ ସଂକ୍ରାମକ ।

ଗୋଲକ—ସତେ ! ଆମେ ହାତଖଣ୍ଡିଆ, ଗୋଡଖଣ୍ଡିଆ ଦେଖିଲେ କହୁଁ ଯେ ସଂକ୍ରାମକ ।

ଚନ୍ଦ୍ର—ଆରେ ତାଙ୍କର ତ ସଂକ୍ରାମକ ଦୋଷ ଆଦୌ ନାହିଁ । ଯାହାର କୌଣସି ଅଙ୍ଗ ନଷ୍ଟ ହୋଇଗଲଣି, ତାର ସଂକ୍ରାମକ ଦୋଷ ଚୁଲିଗଲଣି । ଯାହାଙ୍କ ରୋଗ ପ୍ରକୃତ ସଂକ୍ରାମକ, ଅଜ୍ଞତା ଦୋଷରୁ ସେପରି ରୋଗୀଙ୍କ ସଙ୍ଗରେ ହୁଏତ ଆମେ ଅବାଧରେ ମିଶିଥାଉଁ । ଏଗୁଡ଼ିକ ଲୋକେ ଜାଣିଲେ ସାବଧାନ ହୋଇ-ପାରନ୍ତେ ତ ?

ଗୋଲକ—ନିଶ୍ଚୟ, ନିଶ୍ଚୟ ସାବଧାନ ହୁଅନ୍ତେ ।

ଶିଖର—ଆଗେ ଔଷଧ ଜଣା ନ ଥିବାରୁ ଲୋକେ ଭାବୁଥିଲେ ଯେ ଏ ରୋଗ ଭଲ ହେବାର ନୁହେଁ । କିଛି ପ୍ରତିକାର ପାଇଁ ମଧ୍ୟ ଚେଷ୍ଟା କରୁ ନ ଥିଲେ । ଘୋଡ଼େଇ ଘୋଡେଇ ବଢ଼େଇ ଦେଉଥିଲେ । ଆଜି ମଧ୍ୟ ସେଇ ଦଶା । ଲୋକେ ଜାଣୁ ନାହାନ୍ତି ଯେ ଏ ରୋଗର ଔଷଧ ସବୁ ବାହାରିଲଣି; ଚିକିତ୍ସାରେ ଲୋକେ ଭଲ ହୋଇ ଯାଉଛନ୍ତି । ଇଞ୍ଜେକ୍‌ସନ୍ ନେବା ପାଇଁ ଅବଶ୍ୟ ଡାକ୍ତରଙ୍କ ପାଖକୁ ଦଉଡ଼ିବାକୁ ପଡ଼ିବ । ଲୋକେ ନାନା କାରଣରୁ ଯିବାକୁ କୁଣ୍ଠିତ;

କିନ୍ତୁ ଖାଇବା ଔଷଧ ବି ବାହାରିଲଣି । ହାରାହାରି ମାସକୁ ଆଠ ଅଣା ପଇସା ଖର୍ଚ୍ଚ କଲେ ଲୋକେ ଘରେ ବସି ଔଷଧ ପାଇ ପାରିବେ । ପ୍ରଥମରୁ ଯେ ଯାହା ଘରେ ବସି କାହାକୁ ନ କହି ନିଜେ ନିଜେ ଔଷଧ ବ୍ୟବହାର କଲେ ରୋଗ ସହଜରେ ହଟିଯିବ ।

ଗୋଲକ—ସତେ ! ମୁଁ ତ ନିଜେ ଏ କଥା ଜାଣି ନ ଥିଲି । ଏସବୁ ଲୋକେ ଖାଲି ଜାଣିଲେ କେତେ ଉପକାର ହେବ । କର, କର, ତୁ ଯାହା ଭାବୁଛୁ କର । ଆଉ କଲେଜ ଯାଉନ ହୁଁ ପରା ?

ଚନ୍ଦ୍ର—ନାଁ, କଲେଜ ଛାଡ଼ିଦେଲି । ବି: ଏ: ଟା ପାଶ କଲେ ଚାକିରୀ ଖୋଜନ୍ତି । ଚାକିରୀ ଖଣ୍ଡେ ପାଇଲେ ଘଣାରେ ପଶି ବଣା ହୁଅନ୍ତି । ଆପଣା ପେଟପୋଷିବା ଛଡା଼ ଜଗତରେ ଆଉ କାହାରି କିଛି କରି-ପାରନ୍ତି ନାହିଁ ।

ଗୋଲକ—ବାପା ଜାଣିଲେଣି କଲେଜ ଛାଡ଼ିବା କଥା ?

ଚନ୍ଦ୍ର—ମୁଁ ଜଣେଇ ନାହିଁ କି ଜଣେଇବି ନାହିଁ ; ବିରକ୍ତ ହେବେ । ବଳେ ଜାଣିବେ ଯେ । ସେ ଯାହା କରିବେ ! ମାତ୍ର ମୁଁ ମୋର ମନ ସ୍ଥିର କରି ସାରିଛି ଏଇଆ କରିବି ବୋଲି ।

ଗୋଲକ—କର ଭାଇ, ଏ ଗୋଟାଏ ମହାଯଜ୍ଞ । ମୋ ଦ୍ୱାରା ଯାହା ହୋଇ-ପାରିବ, ମୁଁ ମଧ୍ୟ ତୋର ଏହି ଉଦ୍ୟମରେ ଯୋଗଦେବି । ତୋର ଚେଲା ହେବି । ଆସିଥିଲି ମନ ଦୁଃଖରେ, ଆସିଥିଲି ତୋର ବିପଦରେ ତୋତେ ବୋଧଶୋଧ କରିବାକୁ । ତୋର ମନର ଦମ୍ଭ, ତୋର ଉତ୍ସାହ, ତୋର ଉଦ୍ୟମ, ତୋର କଳ୍ପନା ଓ ତୋର ଉଚ୍ଚ ଅଭିଳାଷ କଥା ଶୁଣି ମୁଁ ବୋଧ ହୋଇଗଲି । ତୋତେ ଆଉ ମୋର କହିବାକୁ କିଛି ନାହିଁ ।

ଚନ୍ଦ୍ର—ହଉ ଭାଇ ଥରେ ଥରେ ଆସୁଥିବୁ । ଏ ସମ୍ବନ୍ଧେ ଯେବେ କିଛି ଜାଣିବାକୁ ଚାହୁଁ, ତେବେ ଅନେକ କଥା ତୋର ଜାଣିବାର ଅଛି । ଜାଣିବା ଉଚିତ ମଧ୍ୟ ।

— ନିରୂପମା—

ଗୋଲକ—ନିଶ୍ଚୟ ଆସିବ । ବରାବର ଆସିବ । ତୋର ଶିଷ୍ୟ ହେବ । ହଁ ଆଉ ପଦେ କଥା, ଶୁଣିଲି ଯେ ତୋ ବାପା କୁଆଡ଼େ ତୋତେ ଆଉ ଗୋଟିଏ ବାହା କରଦେବାକୁ ଚେଷ୍ଟା କରୁଛନ୍ତି । ସତ ଏ କଥା ?

ଚନ୍ଦ୍ର—ଛାଡ଼ ସେ କଥା । ତାଙ୍କର ସେ ଆଶା ବିଫଳ ହେବ । ମୋତେ ପାଇଲେ ତ ? ମୁଁ ଧରାଦେଲେ ତ ?

ଗୋଲକ—ହଉ, ଆଉ କିଛି କହିବାର ନାହିଁ । ବର୍ତ୍ତମାନ ଯାଉଛି, ଫେର ଆସିବ । ବରାବର ଆସିବ । ତୋ ଉଦ୍ୟମରେ ଯୋଗ ଦେବ । ଭଗବାନ ତୋ ଉଦ୍ୟମରେ ସହାୟ ହୁଅନ୍ତୁ ।

( ପ୍ରସ୍ଥାନ )



—ଯବନିକା—

## ଷଷ୍ଠ ଦୃଶ୍ୟ

### ପଲ୍ଲୀଗ୍ରାମ

( ପଦ୍ମନାଭ ବାବୁଙ୍କର ପ୍ରବେଶ )

ପଦ୍ମ—କଣ ହେଲା ! ହେ କଣ୍ଠେଶ୍ୱର ସ୍ୱାଇଁ ! ଘରେ ଅଛ ନା !

(କଣ୍ଠେଶ୍ୱର ସ୍ୱାଇଁ ଓ ତାଙ୍କ ପଛେ ପଛେ ରାମ ସାହୁ ଏବଂ ଆଉ ଗୃହର ପାଞ୍ଚ ଜଣଙ୍କର ପ୍ରବେଶ)

କଣ୍ଠେଶ୍ୱର—ଆଜ୍ଞା, ଆପଣ ଆସିଲେ ସିନା, ଆଜି ଆଉ ଆପଣଙ୍କ ଘର ବୁଲିବାକୁ କେହି ଯାଇପାରିବା ନାହିଁ ।

ପଦ୍ମ—କଣ ! ମତେ ଜବାବ ଦେଲ । ଛଣଗୁଡ଼ାକ ଦାଣ୍ଡରେ ପଡ଼ିଛି, ଗୋରୁ ଅଳିଆ କରୁଛନ୍ତି । ସେଇ କଥା କାଲି କହିଲି ନାହିଁ ?

କଣ୍ଠେଶ୍ୱର—କଣ କରିବା ? ମୋ ଝିଅ କାହିଁକି ଜରୁର ଯିବାକୁ ଖବର ଦେଇଛି । ମୁଁ ବାହାରିଲିଣି ।

ପଦ୍ମ—ହଉ ତେବେ ନ ଯାଇପାରିଲେ ଆଉ ସବୁ ଚାଲନ୍ତୁ । ରାମ ସାହୁ, ପଞ୍ଚ , ମଧୁ ଜେନା ପ୍ରଭୃତି ଅ.୦ ଜଣ ଯିବାର କଥା । ଆଉ ସାତ ଜଣ ଚାଲନ୍ତୁ ।

ରାମ—ଆଜ୍ଞା, ମୋ ପିଇସାକୁ ଭାରି ଝାଡ଼ା ହେଉଛି । ମଣିଷ ପଠେଇଛି । ମୁଁ ନ ଗଲେ ନ ଚଳେ ।

ପଦ୍ମ—ପଞ୍ଚୁ , ମଧୁ, ଆଉ ସମସ୍ତେ ?

ରାମ—ପଞ୍ଚୁ ଆର ତ ପେଟ କାମୁଡୁଛି । ସେ ବାପ ଲୋ ମାଆ ଲୋ ହୋଇ ଗଡୁଛି । ମଧୁଆ ପାହାନ୍ତାରୁ ଉଠି କୁଆଡ଼େ ଗଲାଣି । ଆଉ କାହାକୁ ଦେଖୁ ନାହିଁ । କଏ କୁଆଡ଼େ ବାହାରି ଗଲେଣି ।

—ନିରୁପମା—

ପଦ୍ମ—ଜ ହୋ କଥା କଅଣ ? ମୁଁ ତ କିଛି ବୁଝି ପାରୁ ନାହିଁ । ସମସ୍ତଙ୍କର ଏକାବେଳକେ କଣ ଏମିତ ହେଲା । ଏତ ବଡ ଆଶ୍ଚର୍ଯ୍ୟ କଥା ।

(ଜଣେ ବୃଦ୍ଧ ଅନାଦ୍ଦ ସ୍ୱାଇଁଙ୍କର ପ୍ରବେଶ)

ଅନାଦ୍ଦ—ବାବୁ ! ଅବଧାନ (ଅଭିବାଦନ) ଆପଣ ବାବୁ ଆଜି ଦନଟା ସଭାଳ୍ କରନ୍ତୁ । କାଲି ଆପଣ ଵଛଣାରୁ ଉଠି ନ ଥିବେ, ସମସ୍ତେ ଯାଇଁ ଘର ଓଲାର ସାରଥିବେ ।

ପଦ୍ମ—ସ୍ୱାଇଁ ବୁଢ଼ା କଥାଟା କଣ ବୁଝି ପାରୁ ନାହିଁ । କାଲି ଯିବେ, ଆଜି ଏମିତ ସମସ୍ତଙ୍କର ଏକାବେଲକେ କାହାର ପେଟ କାମୁଡ଼ିଲା, କାହାର ପିଇସାଙ୍କୁ ଝାଡ଼ା ହେଲା, କାହାର ପୁଅ ଘଟୁ ଖବର ଆସିଲା, ଏତ ବଡ଼ ଆଶ୍ଚର୍ଯ୍ୟ କଥା ! ନା, ଏହା ଭିତରେ କିଛି କଥା ଥିଲା ପରି ଲାଗୁଛି ।

ଅନାଦ୍ଦ—ବାବୁ ! ଆପଣ ତ ଆମ ଗାଁ ମଣିଷ । ଆପଣଙ୍କୁ ଲୁଚେଇବା କାହିଁକି; ଗାଁକୁ କୁଆଡ଼େ କୁଷ୍ଠରୋଗୀଙ୍କ ସାହାବ ଆସିଛନ୍ତି । ଆଜି ଦନଯାକ ରହିବେ । କାଳେ କେତେବେଳେ ସାଇ ଭିତରକୁ ପଶି ଆସିବେ, ସେଇ ଡରରେ ଆଜି କେହି କୁଆଡ଼େ ଯାଉ ନାହାନ୍ତି ।

ପଦ୍ମ—କହୋ, ତାଙ୍କ ଡରରେ କାମଦାମକୁ ଯିବେ ନାହିଁ ? ମାନେ କଣ ? ଡର କୋଉଥିପାଇଁ ? ସେ ଯେବେ ଦେଖିବେ କାହାରଠେଇଁ କୁଷ୍ଠରୋଗର କିଛି ଚିହ୍ନ ଦେଖାଯିବ, ତେବେ ତ ତାର ଚିକିତ୍ସାର ବ୍ୟବସ୍ଥା କରିବେ । ଯେପରି ଭଲ ହୋଇଯିବ, ତା କରିବେ । ଏଥିରେ ଡରିବାର କଥା କଅଣ ଅଛି ?

ଅନାଦ୍ଦ—ବାବୁ ଆପଣ ବୁଝି ପାରିବେ ନାହିଁ । ଏ ତ ସବୁ ଗରିବଗୁରୁବା । କାହାର କାଛୁ,କାହାର କୁଣ୍ଡିଆ,କାହାର ଯାଦୁ, କନ୍ଦା ନାଗି ରହିଛି

କାହାକୁ ଯେବେ କେଣି ଟିକିଏ କହିଦେବେ ତ କଥା ସେଇଠି ସରିଯିବ । ସେ ତ ଆଉ କାହାର ସାଙ୍ଗରେ ଚଳିପାରିବ ନାହିଁ । ଆପଣ ବି ତ ତାକୁ କାମରୁ ମନା କରିଦେବେ ନାହିଁ । ସେ କେଉଁଠୁ ପେଟ ପୋଷିବ କେମିତି ? କୁଟୁମ୍ବ ପୋଷିବ କୁଆଡ଼ୁ ?

ପଦ୍ମ—ସ୍ୱାଇଁ ବୁଢ଼ା ! ମୁଁ ଆଉ ତମକୁ କହିବି କଣ ? ଆମ ଲୋକେ ଏତେ ନିର୍ବୋଧ, ଏତେ ମୂର୍ଖ ! ତାଙ୍କର ଭଲ ପାଇଁ ଯାହା ଚେଷ୍ଟା କରାଯାଉଛି, ତାକୁଇ ସେ କହୁଛନ୍ତି ମନ୍ଦ । ଏଥିକି ଆଉ ଉପାୟ କଣ ? ସ୍ୱୟଂ ଭଗବାନ ଆସିଲେ ବି ତାଙ୍କୁ ରକ୍ଷା କରିପାରିବେ ନାହିଁ ।

ଅନାଦି—ବାବୁ ! ଆପଣମାନେ ସିନା ପାଠଶାଠ ପଢ଼ିଛନ୍ତି । କିଏ ଭଲ, କିଏ ମନ୍ଦ ସବୁ ବୁଝୁଛନ୍ତି । ଆମେ ମୂର୍ଖ ଲୋକ । ସରକାରୀ ମଣିଷଙ୍କ ନାଁ ଶୁଣିଲେ ଆମକୁ ଡରମାଡ଼େ । ସରକାରୀ ମଣିଷଙ୍କ କଥା ନିଆରା । ତାଙ୍କ କଥା ଆମେ ବୁଝିପାରୁନା । ସରକାରୀ ପୋଷ୍ଟ ଭିତରେ ପଶିବାକୁ ଖୁବ ଡରମାଡ଼େ ।

ପଦ୍ମ—ଆହେ ସରକାରୀ ମଣିଷ କଣ ଆଉ ଗୋଟା କୋଉଠି ଗଢ଼ାହୋଇ ଆସିଛନ୍ତି । ସେତ ଆମର ଏଇ ମଣିଷ । ଆମର କାମ କରିବା ପାଇଁ ସରକାର ତାଙ୍କୁ ନିଯୁକ୍ତ କରିଛନ୍ତି । ସେ ଆମର ମଙ୍ଗଳ ପାଇଁ କାର୍ଯ୍ୟ କରୁଛନ୍ତି । ତାଙ୍କୁ ଅବିଶ୍ୱାସ କରିବାର କିଛି କାରଣ ନାହିଁ ।

ଅନାଦି—ନାହିଁ ଆଜ୍ଞା, ଆମେ କଣ ଅବିଶ୍ୱାସ କରୁଛୁ କି ? ଆମେ ଗରିବ ଲୋକ, ଆମେ ଡରି ଯାଉଛୁ । ଆମର ଲୋକ ସତ, ହେଲେ କଣ ହେବ, ସରକାରୀ ଗନ୍ଧ ବାଜିଲାକ୍ଷଣି ସେ କେମିତି ଗୋଟା ଗୋଟା ଆଉ ପରକାର ରୂପ ପାଲଟି ଯାଉଛନ୍ତି । ଆମେ ତାଙ୍କ କଥା ବୁଝି ପାରୁନଉଁ । ହାବୁଡ଼େ ପଡ଼ିଲେ ହୁଁ ମାରୁ, ଆପଣା ହିସାବରେ ଥାଉଁ ।

ପଦ୍ମ—ସ୍ୱାଇଁ ବୁଢ଼ା ! ଏ ତ ତମର ଖୁବ ଭୁଲ ଧାରଣା ।

—ନିର୍ଗମେ—

ଅନାଦ—ଆଜ୍ଞା ହଁ, ଆମେ ତ ବୁଢ଼ା ହେଲୁଣି । ଦେଖି ଦେଖି, ଠିକ ଠିକ ଏତକ ଶିଖିଚୁଁ । ଆପଣା ହୁସିଆରରେ ରହିଲେ ଗଲ । ଆଜ୍ଞା ସବୁ ଭଲ—ଚୁପ୍ ରହିଲେ ସବୁ ଗଲ । ଆପଣ ଯାଉନ୍ତୁ । କାଲି ସକାଳେ ସମସ୍ତେ ଯାଇ ଆପଣଙ୍କ ଘର ଗ୍ରୁଇ ଦେଇ ଆସିବେ ।

ପଦ୍ମ—ଆମ ଘର ଗ୍ରୁଉଣି ନ ହେଲ ନାହିଁ । ତୁମେ ମୋ କଥାଟି ଶୁଣ । ଏ ସାହେବ ପୂର୍ବ ସରକାରୀ ମଣିଷ ନୁହନ୍ତି । ସେ କୁଷ୍ଠନିବାରଣୀ ସଂଘର ମଣିଷ । ସେ ଡାକ୍ତର—କୁଷ୍ଠରୋଗ ସମ୍ବନ୍ଧରେ ଭଲ ଜାଣନ୍ତି । କେତେ ରୋଗୀ ଭଲ କଲେଣି ।

ଅନାଦ—ଆଜ୍ଞା କୁଷ୍ଠରୋଗ କଣ ଭଲ ହୁଏ ? ସେ ତ ପୂର୍ବଜନ୍ମ ପାପର ଫଳ ।

ପଦ୍ମ—ତୁମେ କଥାଟା ବୁଝ । ସବୁ ରୋଗ ପରି ସେ ବି ଗୋଟା ରୋଗ । ଆଗେ ଏ ରୋଗର କିଛି ଔଷଧି ବାହାରି ନ ଥିଲା; ତେଣୁ ଭଲ ହୋଇ ପାରୁ ନ ଥିଲା । ଏଇଖିଣି ଔଷଧି ବାହାରିଲାଣି । ହଜାର ହଜାର ଲୋକ ଚିକିତ୍ସିତ ହେଉଛନ୍ତି । କେତେ କେତେ ରୋଗୀ ଭଲ ହୋଇ ଯାଉଛନ୍ତି । ଯାହାଙ୍କର ଅଳ୍ପ ଦିନର ରୋଗ, ସେ ସହଜରେ ଭଲ ହୋଇ ଯାଉଛନ୍ତି ।

ଅନାଦ—ହଉ, ହଉ, ଠାକୁରେ କରନ୍ତୁ । ସବୁ କେମିତି ଭଲ ହୋଇଯାନ୍ତୁ ।

ପଦ୍ମ—ଭଲ ହେବେ କେମିତି ? ଡାକ୍ତରଙ୍କୁ ନୁଚେଇବ । ଔଷଧି ଛୁଇଁବ ନାହିଁ । ସରକାରୀ ସରକାରୀ କହୁଛ—କୁଷ୍ଠନିବାରଣୀ ସଂଘ ସରକାରୀ ନୁହେଁ । ସେମାନେ ବେସରକାରୀ ଲୋକ । ତାଙ୍କ କାମ ହେଉଛି କେମିତି କୁଷ୍ଠରୋଗକୁ ଦେଶରୁ ମୂଳପୋଛ କରିଦେବା ।

ଅନାଦ—ଠାକୁରେ ତାଙ୍କର ମଙ୍ଗଳ କରନ୍ତୁ ।

ପଦ୍ମ—ଠାକୁରେ କଣ କରିବେ ? ଠାକୁରେ କରେଇଲା ବେଳକୁ ତ ତୁମେ ବାଧା ଦେଉଛ ।

ଅନାଦ—ନାହିଁ ଆଜ୍ଞା ! ଆମେ କାହିଁକି ବାଧାଦବା ।

—ନିରୁପମା—

ପଦ୍ମ—ଆଉ ବାଧା କାହାକୁ କହନ୍ତ ? ଡାକ୍ତର ଆସିଛନ୍ତି, ଗାଁ ଗାଁ କରି ସମସ୍ତଙ୍କୁ ଦେଖିବେ । ଯେବେ କାହାରି କିଛି କୁଆଡ଼ୁ ସେ ରୋଗର ହାଉଆ ବାଜିଥିବାର ଦେଖିବେ, ତେବେ ତାକୁ ଔଷଧ ଦେଇ ସେଇଠି ଗୃପିଦେବେ । ଆଉ ଯାହାର କିଛି ନ ଥିବ, ତାର କିଛି ନାହିଁ । ଏହିପରି ଦେଖି ଗାଁ ଗାଁ କରି ବୁଝିଲେ ଜଣାଯିବ କୋଉଠି ରୋଗ ରହିଲା, କୋଉଠି ନାହିଁ । ଗୋଟିଏ ଗୋଟିଏ ପଡ଼ାକୁ ଆସି ସେ ଯେବେ ଅଧେ ମଣିଷଙ୍କୁ ନ ଦେଖିବେ, ତେବେ କୁଆଡ଼ୁ କଣ ବୁଝିବେ ? ଯେ ରହିଗଲେ ତାଙ୍କର ଭିତରୁ ଜଣଙ୍କଠେଇଁ ଥିଲେ ସେ ରୋଗର ମଞ୍ଜି ସେଇଠି ରହିଗଲା—ଫେର୍ କେତେ କାହା ଉପରକୁ ମାଡ଼ିବ ।

ଅନାଦି—ବାବୁ ଏମିତି କଥା ଯେବେ, ତେବେ ଡାକ୍ତର ଆସନ୍ତୁ । ମୁଁ ଗୋଟି ଗୋଟି କରି ଏ ପଡ଼ାର ଅଣ୍ଡା, ବଚ୍ଚା, ମାଇପେ, ମିଣିପେ ସମସ୍ତଙ୍କୁ ହାଜର କରେଇଦେବି ।

ପଦ୍ମ—ସତ କହୁଛ ? ମୁଁ ତେବେ ଆସିବି ଡାକ୍ତର ଯେତେବେଳେ ଆସିବେ ।

ଅନାଦି—ହଉ ଆସନ୍ତୁ । ଆପଣ ଆସିଲେ ଆହୁରି ଭଲ ।

[ପଦ୍ମନାଭ ଓ ପଛେ ପଛେ ସମସ୍ତଙ୍କର ପ୍ରସ୍ଥାନ]



—ନିରୁପମା—

# ୭ମ ଦୃଶ୍ୟ

## କୁଆଁରପୂନେଇଁ ଖେଳଅଗଣା

(ଝିଅମାନଙ୍କର ପ୍ରବେଶ ଓ ଦୁଇଧାଡ଼ି ହୋଇ ଖେଳ ଆରମ୍ଭ)

ଗୀତ

୧ମ ଦଳ— କୁଷ୍ଠରୋଗ ଗୋଟା ରୋଗ (ଲୋ ଭଉଣୀ)
କୁଷ୍ଠରୋଗ ଗୋଟା ରୋଗ
(ଲୋକେ ତାକୁ) ବୋଲନ୍ତି ଯେ ବଡ଼ରୋଗ ।

୨ୟ ଦଳ— ରୋଗ ବୋଲି ତାକୁ କେହି ନ ମଣନ୍ତି
ଜାଣନ୍ତି କରମ ଭୋଗ (ଭଉଣୀ ଲୋ) ।

୧ମ ଦଳ— ବଢ଼ୁଛି କ୍ରମେ ଦେଶରେ (ଲୋ ଭଉଣୀ)
(କୁଷ୍ଠି ସଂଖ୍ୟା) ବଢ଼ୁଛି କ୍ରମେ ଦେଶରେ ।

୨ୟ ଦଳ— ଅବିବେକ ପଣେ ଗୃହେ ରହିଥିଲେ,
ପରଙ୍କୁ ଘର ଶେଷରେ (ଭଉଣୀ ଲୋ)
ପଶିବ ବଲେ ଶେଷରେ (ହେଲେ ସେ ତ)
ପଶିଯିବ ଘରେ ଘରେ ।

୧ମ ଦଳ— ରୋଗକୁ ଔଷଧି କାହିଁ (ଲୋ ଭଉଣୀ)
ସେ ରୋଗ ଔଷଧି କାହିଁ ?

୨ୟ ଦଳ— ଯେ କାଳେ ନ ଥିଲା ସେ କାଳ ଗଲାଣି
ଆଉ ତ ସେକାଳ ନାହିଁ (ଭଉଣୀ ଲୋ)
(ଆଜ ଏବେ) ଔଷଧି ଖୋଜିଲେ ପାଇ (ଭଉଣୀ ଲୋ) ।

୧ମ ଦଳ— ପଢ଼ଆର ହେଉ ନାହିଁ (ଲୋ ଭଉଣୀ)
(କାହାର ଲୋ) ମନରେ ପରତେ ନାହିଁ ।

—ନିରୁପମା—

୨ୟ ଦଳ— ଜାଣିଶୁଣି ବଜ୍ଜନେ ଅଣ୍ଣ ଦେଲେ
ପ୍ରତିକାର ତାର କାହିଁ (ଭଉଣୀ ଲୋ)
(କହ ଅନ୍ତ) ପ୍ରତିକାର ତାର କାହିଁ !

୧ମ ଦଳ— ଆମେ ଅବା କି କରିବା (ଲୋ ଭଉଣୀ)
(ଏ ଗତିକୁ) ଆମେ ଅବା କି କରିବା ?

୨ୟ ଦଳ— ଟାଙ୍ଗଲରେ ମେଳରେ କୁଷ୍ଠରୋଗ କଥା
ଗୀତ ଗାଇ ପ୍ରଚାରିବା (ଭଉଣୀ ଲୋ)
(ଆମେ ଆସ) ଗୀତରେ ଶୁଣାଉଥିବା ।

ସମସ୍ତେ— (ଚାଲ ସବୁ) ଗୀତ ଗାଇ ଶୁଣାଇବା (ସମସ୍ତଙ୍କୁ) ।
କୁଷ୍ଠରୋଗ ସହଜେ ହେବ ଆରୋଗ୍ୟ ।
(ଭଉଣି ଲୋ) କୁଷ୍ଠରୋଗ ଛୋଟା ରୋଗ ।

—(ସଂକ୍ଷେପ)—



—ନିରୁପମା—

# ଦ୍ୱିତୀୟ ଅଧ୍ୟାୟ

## ପ୍ରଥମ ଦୃଶ୍ୟ

କକ୍ଷ

(ନିରୁପମା ଉପବିଷ୍ଟା)

ଗୀତ

ଅସାର ଜୀବନେ କିବା ପ୍ରୟୋଜନ ଅଶାନ୍ତ ଗଢ଼ିବା ପାଇଁ ।
ତୁଚ୍ଛା ପାପମୋହ ମାୟା କେବେ କାହିଁ ପରହିତେ ଲୋଡ଼ା ନାହିଁ ॥
ବିଧାତାଙ୍କ ବିଧି ଲଙ୍ଘିବା ଶକତି ମନୁଷ୍ୟର ଅଛି କାହିଁ ।
ଭ୍ରମେ ଭ୍ରମି ଭ୍ରମ ବିହ୍ୱଳେ ପଡ଼ି ସେ ମହାଭ୍ରମେ ଗଡ଼ୁଥାଇ ॥
ନିତି ଦେଖି ଦେଖି ନ ପାରଇ ଶିଖି ନୟନ ମେଲାଇ ଚାହିଁ ।
ଶେଷେ କଲା କର୍ମ ନେଇ ନେଇ ଭାଳେ ଫେରିବା ପଥ ନ ଦିଶଇ ॥

—ନିରୁପମା—

(ଚନ୍ଦ୍ରଶେଖରଙ୍କର ପ୍ରବେଶ)

ଚନ୍ଦ୍ର—ନିରୁପମା ! ମୁଁ ଯେତେବେଳେ ଆସେଁ, ଦେଖେଁ ତୁମେ ମୁହଁଟି ଶୁଖେଇ ବସି ବସି କଣ ଭାବୁଥାଅ । କଣ ଏତେ ଭାବୁଛ ? ବରାବର ଏପରି ଦେଖିଲେ ମୋର ଆଉ ଆସିବାକୁ ମନ ହୁଏନି ?

ନିରୁ—ମନ ହୁଏ କିପରି ଆସନା । ମୋଠାରୁ ଦୂରରେ ରୁହ । ମୋତେ ଭୁଲିଯାଅ । କିନ୍ତୁ ପାରିବୁ କାହିଁକି କଥାଟା ବାହାରେ ନା । କହି ପାରେ ନା । କ୍ଷମାକର । ମୁଁ କଣ କରିବି । ମୋତେ ବରାବର କାନ୍ଦୁଛି ଚିନ୍ତା କର ନା । ମୁଁ ଯେତେ ଚେଷ୍ଟା କରୁଛି ଚିନ୍ତା ଛାଡ଼ିବାକୁ, ଚିନ୍ତା ତ ମତେ ଛାଡ଼ୁ ନାହିଁ । କଣ କରିବି ? ତୁମ୍ଭ ବାପଘରରେ ଏ ଘରଟି ଆଜି କେଡ଼େ ସୁଖମୟ ହୋଇଥାନ୍ତା । ପିତାମାତାଙ୍କର କି ଆନନ୍ଦ ହୋଇଥାନ୍ତା ! ଭଗବାନଙ୍କର କୂଟ, ମୋ ପରି ଗୋଟା ଅଲକ୍ଷଣୀକୁ ଆଣି ତମ ଗଳାରେ ଛନ୍ଦି ଦେଲେ—ସମସ୍ତଙ୍କର ଆନନ୍ଦଉଲ୍ଲାସରେ କାଳ ପଡ଼ିଗଲା । ମୁଁ ପୂର୍ବଜନ୍ମରେ କି ପାପ କରିଥିଲି କେଜାଣି, ସେହି ପାପର ଫଳ ଭୋଗିବାକୁ ପଡ଼ୁଛି ଏକା ମୋତେ ନୁହେଁ, ତମକୁ ଓ ଆଉ ସମସ୍ତଙ୍କୁ ।

ଚନ୍ଦ୍ର—ନିରୁପମା ! ତୁମେ କାହିଁକି ଏତେ କଥା ଭାବୁଛ ? ମୁଁ ତ ଆଦୌ ସେଥିପାଇଁ ଦୁଃଖିତ ନୁହେ । ରୋଗ ଉପରେ କାହାର ହାତ ଅଛି ? ତମର ଏ ରୋଗ ବଳେଇ ଯାଇ ନାହିଁ । ଶୀଘ୍ର ଆରୋଗ୍ୟ ହୋଇଯିବ । ସେଥିପାଇଁ ବ୍ୟସ୍ତ ହେବ ନାହିଁ । ମୁଁ ବର୍ତ୍ତମାନ ଯାଇ କୁଷ୍ଠାଶ୍ରମରେ ଡାକ୍ତରଙ୍କ ସହିତ କୁଷ୍ଠରୋଗୀମାନଙ୍କୁ ଚିକିତ୍ସା କରି ଶିଖୁଛି । ଭଲକରି ବୁଝିଲିଣି ଯେ ପ୍ରଥମ ଅବସ୍ଥାରେ ଚିକିତ୍ସା କଲେ ରୋଗ ସହଜରେ ଭଲ ହୋଇଯାଏ । ତମର ଏ ପ୍ରଥମ ଅବସ୍ଥା, ଶୀଘ୍ର ଭଲ ହୋଇଯିବ ।

ନିରୁ—ହଁ, ମୋ ମନ ଭୁଲାଇବା ପାଇଁ ତମେ ଯେତେ ଯାହା ପାର କହିବ; କିନ୍ତୁ କୋଷ୍ଠରୋଗ କିଏ କେବେ କାହାର ଭଲ ହେଲଣି ? ମୁଁ କେମିତି ଭୁଲିବି ?

ଚନ୍ଦ୍ର—ନିରୁପମା ! ତମର ଏ ଖାଲି ଭୁଲ ଧାରଣା । ଏକା ତମର ନୁହେଁ, ଅନେକଙ୍କର ଏ ଭୁଲ ଧାରଣା ଅଛି । ସେଇଥିପାଇଁ ଲୋକେ ରୋଗ ହେଲା କ୍ଷଣି ଚିକିତ୍ସା ନ କରି, କାହାକୁ ନ କହି ଲୁଚାଇ ରଖନ୍ତି । ଫଳରେ ରୋଗଟା ବଢ଼ିଯାଏ । ବଢ଼ିଗଲେ ଆଉ ବଳ ପାଏ ନାହିଁ । ଭଲ ହେବା ବଡ଼ କଠିଣ ହୁଏ । ଭଗବାନଙ୍କର ତୁମ୍ଭ ପ୍ରତି ବିଶେଷ ଅନୁଗ୍ରହ ଯେ ଠିକ୍ ସମୟରେ ତମ ରୋଗ ଧରା ପଡ଼ିଛି । ଚିକିତ୍ସା ଆରମ୍ଭ ହୋଇଛି, ତୁମର ରୋଗ ଶୀଘ୍ର ଆରୋଗ୍ୟ ହୋଇଯିବ । ମନ ଦୁଃଖ କର ନାହିଁ । ରୋଗକୁ ଆରୋଗ୍ୟ କରିବାର ଦାୟିତ୍ୱ ମୋ ଉପରେ । ତୁମେ ଭୁଲିଯାଅ ଯେ ତମର ରୋଗ ଅଛି । ମନ ପ୍ରଫୁଲ୍ଲ ରଖ ।

ନିରୁ—ପାରିବି କିପରି ? ପ୍ରଫୁଲ୍ଲତା ପାଇବି କୋଉଠୁ ?

ଚନ୍ଦ୍ର—ନା, ନା, ତା କହିଲେ ଚଳିବ ନାହିଁ; ମନର ପ୍ରଫୁଲ୍ଲତା ଉପରେ ସବୁ ରୋଗର ପ୍ରଭାବ ବହୁ ପରିମାଣରେ ନିର୍ଭର କରେ । ସେଥି-ପାଇଁ ଉପାୟ ଖୋଜି ବାହାର କରିବାକୁ ପଡ଼ିବ । କିଛି କାମରେ ଲାଗି ରହିଲେ, ମନ ଆଉ ସେତେ ସେଆଡ଼କୁ ଯିବ ନାହିଁ । ନୁହେଁ କି ?

ନିରୁ—ହଁ ହୋଇପାରେ, କି କାମରେ ଲାଗିବି ? ମୋ ପାଇଁ କାମ କାହିଁ ? ଶାଶୁ ଶ୍ୱଶୁରଙ୍କ ସେବା—ଘରର କୌଣସି ପଦାର୍ଥକୁ ଛୁଇଁବାକୁ ଡର ମାଡ଼ୁଛି ।

ଚନ୍ଦ୍ର—ଆଚ୍ଛା, କିଛି ବୁଣାବୁଣି କି ଗଢ଼ାଗଢ଼ି ହାତକାମ କରି ପାରିବ ? ତାହାହେଲେ ହାତକାମ ଶିକ୍ଷାର ସୁବିଧା କରନ୍ତି ।

ନିରୁ—କେତେପୁଡ଼ାଏ ନାମ ମୁଁ ଆମ ଗାଁ ପାଖ ବାପଙ୍କ ସ୍କୁଲରୁ ଶିଖିଛି ।

ଚନ୍ଦ୍ର—ସତେ ! ଏ କଥା ତ ମୁଁ ଜାଣି ନ ଥିଲି । କଣ କଣ କରିଜାଣ ?

ନିରୁ—ଜାଣେ—ଛଅପଦରେ ଚଟେଇ, ଭେନଟି ବ୍ୟାଗ ଆଦି; ତୋଆ ଚେଟରେ, କାଇଁଚରେ, କେରଟରେ, ଆଖୁସର ପାଣଆ, କୁଟା, ତାଳପତ୍ର, ଖଜୁରିପତ୍ର ଆଦିରେ କିଛି କିଛି କରିଜାଣେ; ଝୋଟର ଗାଲିଚା, ଦରି, ଆସନ ଆଦି ବୁଣିଜାଣେ; ଛିଣ୍ଡା କାଗଜର କଣ୍ଢେଇ ମଧ୍ୟ କରିଜାଣେ । ସେସବୁ ପଦାର୍ଥ ପାଇଲେ କିଛି କିଛି ଜିନିଷ କରିବାରେ ଲାଗିଗଲେ କେଜାଣି ମନ ଲାଗିଲେ ଲାଗିପାରନ୍ତା !

ଚନ୍ଦ୍ର—ନିରୁପମା ! ଏକଥା ଶୁଣି ମୋ ମନରେ ଯେ କେତେ ଆନନ୍ଦ ହେଉଛି ମୁଁ କହି ପାରିବ ନାହିଁ । ମୋ ଜୀବନରେ ଗୋଟିଏ ପ୍ରବଳ ଆକାଙ୍କ୍ଷା ଯେ ମୁଁ ଗ୍ରାମେ ଗ୍ରାମେ କୁଟୀରଶିଳ୍ପ କିପରି ବିସ୍ତାର ହୋଇଯାନ୍ତା ଦେଖନ୍ତି । ବର୍ତ୍ତମାନ ଆମ ଦେଶର ପ୍ରକୃତ ମଙ୍ଗଳ କୁଟୀରଶିଳ୍ପ ଉପରେ ନିର୍ଭର କରୁଛି ।

ନିରୁ—କରୁଛି କିଏ ? ସମସ୍ତେ ତ କଳକାରଖାନାରେ ମାତିଛନ୍ତି । କଳ-ଜିନିଷ ଚକଚକିଆ । ସମସ୍ତେ ସେଇଥିରେ ଭୁଲୁଛନ୍ତି । ହାତ ତିଆରି ପଦାର୍ଥ ଦେଖିଲେ ତାଙ୍କୁ ଗନ୍ଧଉଛି ।

ଚନ୍ଦ୍ର—ହଁ ଏଇକ୍ଷଣି ସେହି ଦଶା ଘଟିଛି । କିନ୍ତୁ ବୁଝିବେ; ବୁଝିବାକୁ ନିଶ୍ଚୟ ବାଧ୍ୟ ହେବେ । ବିଦେଶୀ କଳଦ୍ୱାରା ଆମ ଦେଶର କେବେ ହେଲେ ମଙ୍ଗଳ ହେବ ନାହିଁ । ଆମ ଦେଶର ଲକ୍ଷ ଲକ୍ଷ ଦରିଦ୍ରଙ୍କର ଦୁଃଖ କେବେହେଲେ ଘୁଞ୍ଚିବ ନାହିଁ । କଣ କେତେ ଧନୀ ଅଧିକ ଧନୀ ହୋଇ ପାରନ୍ତି, ଦୁଃଖୀଙ୍କ ଦୁଃଖ ଛୁଟିବ ନାହିଁ । ଆମର ପ୍ରଧାନ କଳ ଆମର ହାତ । ଆମେ ଆଗେ ଆମ ହାତକୁ ସିଧା କରି ପାରିଲେ ଆମର ଯେତେବେଳେ କଳ ଲୋଡ଼ାହେବ,

ଆମର ହାତ ନିଶ୍ଚୟ ଆମ ଭଳିଆ କଳ ଆମ ପାଇଁ ଗଢ଼ି ଥୋଇଦେବ । ସେ କଳ ହେବ ଆମର । ସେ କଳ ଆମ ବୋଲି ମାନିବ । ପରଗଢ଼ା କଳ ନେଇ ପର ହାତକୁ ଗୁହାଁ ବସିବା ଅର୍ଥ ଆପଣା ଗଳା ପର ହାତକୁ ଗୁଣ୍ଡିଦେବା ଛଡ଼ା ଆଉ କଣ ହୋଇପାରେ !

ନିରୁ—ମୁଁ ଏଥିରେ କି ସାହାଯ୍ୟ କରିପାରିବି ?

ଚନ୍ଦ୍ର—ପାରିବ, ତୁମ୍ଭେ ଯଥେଷ୍ଟ ସାହାଯ୍ୟ କରିପାରିବ । ହସ୍ତକର୍ମ ଉପରେ ମୋହର ସମ୍ପୂର୍ଣ୍ଣ ବିଶ୍ୱାସ ଓ ବିଶେଷ ଶ୍ରଦ୍ଧା ଥିଲେହେଁ ମୁଁ ନିଜେ ହାତରେ କିଛି କାମ କରିବା ଏପର୍ଯ୍ୟନ୍ତ ଶିଖି ନ ପାରି ନିଚେଷ୍ଟ ହୋଇ ରହିଥିଲି । ମୋତେ ସାହାଯ୍ୟ କରିବା ପାଇଁ ଜଣେ ହେଲେ କର୍ମୀ ନ ପାଇ ଏ ପର୍ଯ୍ୟନ୍ତ କିଛି କରି ପାରୁ ନ ଥିଲି । ଭାବୁଥିଲି ଶୀଘ୍ର କିଛି ହସ୍ତକର୍ମ ଶିକ୍ଷାକରି କାମ ଆରମ୍ଭ କରିବି । ବର୍ତ୍ତମାନ ବୁଝିପାରୁଛି ବାଞ୍ଛାକଳ୍ପତରୁ ଭଗବାନଙ୍କର ଏହା ମୋହ ପ୍ରତି ଗୋଟିଏ ଖୁବ୍ ଅନୁଗ୍ରହ ଯେ ମୋହର ବାଞ୍ଛା ପୂର୍ଣ୍ଣ କରିବା ନିମନ୍ତେ ତୁମ୍ଭଙ୍କୁ ମୋର ସହଧର୍ମିଣୀ ଓ ସହକର୍ମିଣୀ କରି ଯୋଗ୍ଡିଦେଇଅଛନ୍ତି ।

ନିରୁ—ମୁଁ ତ ଭାବୁଛି, ମୋ ପାପର ଫଳ ମୁଁ ଭୋଗିଥାନ୍ତି । କେଜାଣି କାହିଁକି ଭଗବାନ ତମ ଗଳାରେ ମତେ ଗୋଟିଏ ନାଗ ସାପ ପରି ଛନ୍ଦିଦେଲେ । ନିମର ସୁଖଶାନ୍ତି ମୁଁ ସବୁ ବୁଡ଼େଇ ବସିଲି ।

ଚନ୍ଦ୍ର—ନିରୁପମା ! ତୁମ୍ଭେ ଉଠିଲେମାନ ମନରେ ଦୁଃଖ ନ ରଖି କାମରେ ଲାଗିଯାଅ । ଯେ ସବୁ ପଦାର୍ଥର ନାମ କହିଲି, ସେସବୁ ମୁଁ ସଂଗ୍ରହ କରି ତୁମ୍ଭ ନିକଟରେ ଦେଇଦିବି ।

ନିରୁ—କୋଉଠି କେମିତ ବସି କଣ କରିବ ! କାମ କରିବାକୁ ସୁବିଧା କିଅଉ ହେବ ?

— ନିରୁପମା —

ଚନ୍ଦ୍ର—ହେବ, ତାର ସୁବିଧା ସବୁ ମୁଁ କରିଦେଇ ଯିବି । ବୋଉଙ୍କୁ କହି ସବୁ ସଜାଡ଼ି କରିପାରିବ । ବୋଉ ନିଜେ ସବୁ ଦେଖିବେ । କିଛି ଅସୁବିଧା ହେବ ନାହିଁ । ବର୍ତ୍ତମାନ ସେତେ ଯାହା ପାର କରୁଥାଅ । ମୁଁ ତ ପ୍ରତି ରବିବାର ଆସି ଦେଖି ଯାଉଥିବି । କୁଷ୍ଠ-ସେବା ଓ କୁଷ୍ଠରୋଗର ଚିକିତ୍ସା ଶିକ୍ଷାରେ ମୁଁ ଲାଗିଛି । ସେତିକ ଶେଷକରି ଯେ କୌଣସି ଗ୍ରାମରେ କୁଷ୍ଠସେବା ଓ କୁଟୀରଶିଳ୍ପ ବିସ୍ତାର ନିମନ୍ତେ ଗୋଟିଏ ଆଶ୍ରମ ସ୍ଥାପନ କରିବା । ଉଭୟେ ମନ ପ୍ରାଣ ଦେଇ ଏହି ଦୁଇଟିକୁ ଜୀବନର ବ୍ରତ କରି ଲାଗିଯିବା । ଗ୍ରାମକୁ ଗ୍ରାମ ଏହାର ବିସ୍ତାର କରିବା । ଭଗବାନ ତୁମ୍ଭଙ୍କୁ ଶୀଘ୍ର ଆରୋଗ୍ୟ କରିଦେବେ, ମୋର ଏ ଦୃଢ଼ବିଶ୍ୱାସ । ଭଗବାନଙ୍କର ଶୁଭେଚ୍ଛା ଗ୍ରହଣ କରି ଏହି କାର୍ଯ୍ୟରେ ଲାଗିଗଲେ ଆମ ଉଭୟଙ୍କ ମନରେ ପ୍ରକୃତ ଶାନ୍ତି ଆସିବ ଓ ଜୀବନ ସାର୍ଥକ ହେବ ।



# ଦ୍ୱିତୀୟ ଦୃଶ୍ୟ

## ରାଜପଥ

(ବାହାଘର୍‌ଆ ଦଲାଲ୍ ନଟବର ପ୍ରଧାନର ପ୍ରବେଶ, ପଛରୁ ଡାକ ଡାକି ମଧ୍ୟସ୍ଥ ନାରାୟଣ ରଥଙ୍କ ପ୍ରବେଶ)

ନାରାୟଣ—ହୋ ! ହୋ ! ଭଦ୍ରଲୋକ ! ହୋ ଭଦ୍ରଲୋକ ! ଟିକଏ ଶୁଣ, ଟିକଏ ଶୁଣ ।

ନଟ— କଣ କହୁଛ ? କାହିଁକି ଡାକୁଛ ?

ନାରାୟଣ—ତୁମେ ଏଣେ କୁଆଡ଼େ ଯାଇଥିଲ ? ମଙ୍ଗରାଜଙ୍କ ଘରକୁ ଯାଇଥିଲ କି ?

ନଟ—ଆମେ କୁଆଡ଼େ ଯାଇଥିଲୁ ତୁମେ ସେଥିରୁ କଣ ପାଇବ ? କାହିଁକି ପଚାରୁଛ ?

ନାର—ହଁ, ଆମେ ପଚାରୁଛୁ, ଆମର ପଚାରିବାର ଅଧିକାର ଅଛି । ତମକୁ କହିବାକୁ ହବ ।

ନଟ—କାହିଁକି ? ତୁମକୁ କ'ଣ ଏଥିପାଇଁ କୈଫିୟତ ଦେବାକୁ ପଡ଼ିବ ନା କଣ ?

ନାର—ହଁ, କୈଫିୟତ ଦେବାକୁ ପଡ଼ିବ । ଅଲବତ କୈଫିୟତ ଦେବ । କୈଫିୟତ ନ ଦେଇ ତେମେ ଯାଇ ପାରିବ ନାହିଁ ।

(ଯୋରପୂର୍ବକ ପ୍ରଧାନଙ୍କର ହାତ ଧରି ଅଟକାଇବା, ପ୍ରଧାନେ ଟାଣି-ଓଟାରି ହେବା । ଦୁଇ ଜଣ ପଥିକଙ୍କର ପ୍ରବେଶ)

୧ମ-ପ—କଣ କଣ ଭାଇ ? କାହିଁକି ଏ ରାସ୍ତାଟା ଉପରେ ବୋଲ୍‌ବୋଲି ଟଣା ଓଟରା ହେଉଛ ? ଯେବେ ବଳ ଅଛି, ତେବେ ରାସ୍ତାରୁ ଟିକଏ ଏକପାଖିଆ ହୋଇଯାଅ; ଧ ଧ ମୁକ୍ତା କସାକସି

ହୋଇଯାଅ; ଯେ ଯାହାର ରାଗ ମରିଯିବ ଓ ରାଗ ଶାନ୍ତ ହୋଇ-
ଯିବ । ଏପରି ମୁହଁରେ ବୋଲ୍‌ବୋଲି ଝଗଡ଼ା ହେଲେ
କିଣ ହେବ ?

୨ୟ-ପ—ଏଁ, ଅଚ୍ଛା ପରାମର୍ଶ ଦେଉଛ !

୧ମ-ପ—ମୁଁ ତ ଠିକଣା କଥା କହିଲି । ହକ କଥା, ଏଥିରେ ଗେଁ ପେଁ
ନାହିଁ । ଶୁଖିଲା ପାଟିତୁଣ୍ଡରେ କେବେ କାହାର ରାଗ ମଲାଣି ?
ଅଧିକରେ ରାଗ ବଢ଼ିବାର କଥା ।

୨ୟ-ପ—କିଣ କିଣ ଭାଇ କଥା କହ ? କାହିଁକି କଜିଆ ଲଗେଇଛ ?

ନାରୀ—ଅହେ ଭାଇ, କଥା କିଣ କି, ଆମ ଏଠି ଗୋଟିଏ ଖାନ୍‌ଦାନ୍
ଘର—ମଙ୍ଗରାଜଙ୍କ ଘର । ଜାଣିଥିବ, ଶୁଣିଥିବ ।

୨ୟ-ପ—ହଁ, ଆମେ ଜାଣୁ । ତାଙ୍କ ପୁଅ ବାହା ହେଇ ନାହାନ୍ତିକି ଆମ
ସେ ଚୌଧୁରୀଙ୍କ ଝିଅକୁ ?

ନାରୀ—ହଁ, ହଁ, ତାଙ୍କ ପୁଅ ଚୌଧୁରୀଙ୍କ ଝିଅକୁ ବାହା ହେଇଛନ୍ତି । ତାଙ୍କ
ଘରେ ବାହା ନିମନ୍ତରେ ଆମ ବାପା ମଧ୍ୟସ୍ଥଗିରି କରୁଥିଲେ । ଆମ
ବାପାଙ୍କ ଅନ୍ତେ ଆମେ ବି କରୁଁ । ମଝିରେ ଏ ଗୋଟାଏ ଦଲାଲ
କୋଉଠୁ ଆସି ଚୌଧୁରୀଙ୍କ ଘରୁ କିଛି ପକେଇଦେଲା । ଫେର୍
ଆମ ଦାନାରେ ଧୂଳି ଦେଇ ମଙ୍ଗରାଜଙ୍କ ପାଖରୁ ବି କିଛି
ପକେଇଲା । ମଙ୍ଗରାଜେ ଆମକୁ ବୋଧଶୋଧ କରି ଯାହା କିଛି
ଦେଲେ । ଇଏ ଏଇଭଳିଆ କାମ କରି ଆମ ଦାନାରେ ଧୂଳି
ପକାଉଛି ।

ନଟ—ନା ହୋ, ଆମେ ସ୍ୱାଙ୍କର କିଣ ଖାଇଲୁ ? ତାଙ୍କ ମନ ମାନିଲା,
ସେ ଆମକୁ ଡକେଇଲେ । ଆମେ ଆମ ବୁଦ୍ଧିବଳ ଖଟେଇ,
ପରିଶ୍ରମ କରି ଆମ ଗଣ୍ଡାକ ଆମେ ନେଲୁ । ତାଙ୍କର ଯାହା
ପାଉଣା ସେ ତ ପାଇଲେ ।

—ନିରୁପମା—

ନାଗ—ସେତେବେଳେ ତ ଯାହା କରିବାର କରିଥିଲ, ଏଇକ୍ଷଣି ମଙ୍ଗରାଜଙ୍କ
ଘରେ ଆଜ ଗୋଟିଏ ବାନ୍ଧାଘରର ପ୍ରସ୍ତାବ ଚାଲିଛି । ଆମେ ତାଙ୍କ
ଘରର ମଧ୍ୟସ୍ଥ । ସେଥିପାଇଁ ସେ ଆମକୁ ଡକେଇ ନେଇ ଚୁପ୍
କରି ଗୋଟିଏ କନ୍ୟାପାତ୍ରୀ ଠିକଣା କରିବାକୁ କହୁଛନ୍ତି । ସ୍ଥା
ଭିତରେ ଇଏ କେମିତି କୋଉଠୁ ସୂରାକ ପାଇ ମଙ୍ଗରାଜଙ୍କ
ଘରଠି ଯାଇ ଲଙ୍ଗପଙ୍ଗ ହେଲାଣି । ଦେଖୁଥା ଏହା କଥା । ଆମେ
କଣ ସହଜରେ ଛାଡ଼ିଦେବୁ ଆଉ !

୨ୟ-ପ—କଣ ପାଇଥିଲେ ଇଏ ସେଥର ?

ନାଗ—ଚୌଧୁରୀଙ୍କଠଉଁ କଣ କେତେ ପକେଇଦେଲ ତା କଣ ଆମେ
ଜାଣିପାରିଲୁ ଆଗେ । ମଙ୍ଗରାଜଙ୍କଠଉଁ ବି କିଛି ପକେଇ-
ଦେଲ ।

୨ୟ-ପ—ତମେ ମଧ୍ୟସ୍ଥ ଭାବରେ ଅବଶ୍ୟ କିଛି ପାଇଥିବ ?

ନଟ—ତାକର ମାମୁଲ ପାଉଣା—କଣ ମହାଲାୟକଙ୍କ ଘରେ
ମଧ୍ୟସ୍ଥମାନେ ଯାହା ପାଇଆନ୍ତି—ଟଙ୍କା ଦି'ଗଣ୍ଡା, ଧୋତି ଗୋଦର
ଦି ଯୋଡ଼ା, ଆଉ ଉଠାଁ ବାଣୁଁ ଯେତେ କାନମୋଡ଼ା । ତା
ତ ସେ ପାଇଲେ । ଆମେ କଣ ସେଥିରୁ ଭାଗ ଖୋଜୁଛୁଁ ?

୧ମ-ପ—ଆରେ, ସେ ତ ତମକୁ ବଳେବଳେ ଭାଗ ଦେବାକୁ ବସିଥିଲେ !
ଏଇକ୍ଷଣି ନେବ ତ କହ ଦେଇଦେବେ । ତେମେ ଯାହା
ପାଇଥିଲ ଭାଗ ଦେବ ତ ?

ନଟ—ନାହିଁ, ନାହିଁ, ଆମେ ନେବା ନାହିଁ କି ଦେବା ନାହିଁ ।

ନାଗ—ଚୌରଙ୍କର ମୁହଁ ଟାଣ । ଦେଖୁଛ ଏ ଲୋକଟା କେଡ଼େ ବେହିଆ ।
ଚୌରଙ୍କ ପରି କୁଆଡ଼ୁ ଆସି ଦୁଇ ପାଖରୁ କିଛି କିଛି ପକେଇ-
ଦେଲା । ଆମେ ତ ଆମର ଯାହା ମାମୁଲ ଅଛି—ଆଗେ ଆମ
ବାପାଙ୍କ ଅମଳରେ ଦୁଆର ଚଢ଼ି ଦିଆଯାଉଥିବା ଥିଲା । ଏଇକ୍ଷଣି
ତ ସୁଆର ଉଠିଗଲାଣି । ତେବେ କି କଥାରେ ଆମ ପରାମର୍ଶ

ଲୋକଙ୍କବା; ଆଉ ଯାହା କିଛି ମାମୁଲି ଅଛି ତାଇ ମିଳୁଛି । ଏ ଦେ...କଟା କଥା କହୁଛି କେମିତି ଶୁଣ । ଆଉ ଭଲ ଲୋକ କହିବ ?

୨ୟ-ପ—(ନାରାୟଣ ପ୍ରତି) ମଙ୍ଗରାଜେ ନଜେ ବାହା ହେଲାବେଳେ କିଏ ମଧ୍ୟସ୍ଥ ଥିଲ ? ତେମେ ଥିଲ ?

ନାରା—ତେତେବେଳେ ଆମ ବାପା ବଞ୍ଚିଥିଲେ । ସେହି ମଧ୍ୟସ୍ଥ ଥିଲେ ।

୨ୟ-ପ—ତାଙ୍କ ପୁଅଙ୍କ ବାହାଘରକୁ ତେମେ ମଧ୍ୟସ୍ଥ ?

ନାରା—ହଁ, ସେତିକବେଳେ ପର ଇଏ ଗୋଟାଏ କୁଆଡ଼ୁ ଆସି ଗୋଳମାଳ କରିବାରୁ ଆମ ପାଉଣାପତ୍ର କମିଗଲା ।

୨ୟ-ପ—(ନଟ ପ୍ରତି) ଦେଖିବଟି ତାଙ୍କର ଗୋଟାଏ ବାହାଘର ତାଙ୍କ ବାପାଙ୍କ ଅମଳରୁ । ସେଥିରେ ତାଙ୍କର ଗୋଟାଏ ସ୍ୱତ୍ୱ ଜନ୍ମିଛି । ସେ ସ୍ୱତ୍ୱରେ ତେମେ ଆସି ଗୋଳମାଳ କଲ କାହିଁକି ? ତମର ଏଇଟା ଖରାପ କାଇଲ କାମ ! ନୁହେଁ କି ?

ନଟ—ଆମେ ଆଉ କଣ—

୨ୟ-ପ—ତାହେଲେ ମାନ ତମର ଏଥିରେ କାଇଲ । ଆଉ ଅଧିକା ଗୋଳମାଳ କଲେ ସେ ଯାହା ପାଇଥିଲେ ତାର ଭାଗ ତମକୁ ବୁଝାଇ ଦେବେ ।

୧ମ-ପ—ହଁ, ସେ ବେଶ୍ ନଦା ନଦା, ସିଧା ସିଧା । ସାଙ୍ଗେ ସାଙ୍ଗେ ବାଣ୍ଟ ଛୁଟିଯିବ ।

୨ୟ-ପ—(ନାରାୟଣ ପ୍ରତି) ଆଚ୍ଛା ମଧ୍ୟସ୍ଥେ ! ତେମେ କହିଲ, ଏଇ ଓଡ଼ିଶାରେ ଯେତେ ଯୋଡ଼ିଏ ରାଜା, ମହାରାଜା ଥିଲେ, କୋଉ କାଳରୁ କୋଉ ଯୁଗରୁ କେତେ କେତେ ପୁରୁଷରୁ ସବୁ ରାଜତ୍ୱ କରି ଆସୁଥିଲେ, ତାଙ୍କ ରାଜତ୍ୱ ସବୁ ରହିଲା ନାହିଁ । ତାଙ୍କ ସ୍ୱତ୍ୱ ତାଙ୍କ ଅଧିକାରକୁ କେହି ଟିକିଏ ଅନେଇଲେ ନାହିଁ । ବୁଝି ପାରୁଛ ?

ନାରା—ହଁ ବୁଝୁଛି ।

—ନିରୁପମା—

ସ୍ୟ-ପ—ଯେତେ ସୁଆଡ଼େ ଜମିଦାର ଅଛନ୍ତି, ତାଙ୍କ ଜମିଦାରୀ ସ୍ୱତ୍ୱସବୁ ଲୋପ ହେବାକୁ ବସିଲଣି । ତମ ବାପା ମଙ୍ଗରାଜଙ୍କ ନାନ୍ହାଘରରେ ମଧ୍ୟସ୍ଥି କରିଥିଲେ । ତାଙ୍କ ପୁଅ ବାନ୍ଧ୍ୟ:ଘରବେଲକୁ ତେମେ ମଧ୍ୟସ୍ଥ ହୋଇଥିଲ । ସେଥିରୁ ତେମେ ଗୋଟାଏ ମୌରସୀସ୍ୱତ୍ୱ ଦାବୀ କରି ସାରିଲଣି; ଏଇ ତ ତମର ଅକଲ ! ଖାସ୍ତା ଉପରେ ତାଙ୍କ ସାଙ୍ଗରେ ଆସି ଝଗଡ଼ା କରୁଛ । ତମର ଏଇଟା ଭାରି କସୁର । ଯାଅ ଯାଅ, ସେ ଯାହାର ଆପଣା ଆପଣା ବାଟ ଧରି ସିବନ୍ତି । କେହି କାହାକୁ କିଛି କହନା । ବାଟେ ବାଟେ ଆପଣା ଆପଣା ଘରକୁ ଚାଲିଯାଅ ।

(ସମସ୍ତଙ୍କର ପ୍ରସ୍ଥାନ)

——

## ୩ୟ ଦୃଶ୍ୟ

### ମଙ୍ଗରାଜଙ୍କ ଚଉପାଢ଼ୀ

(ଗୁମାସ୍ତା ଓ ଖାତକମାନେ ଉପବିଷ୍ଟ ଏବଂ ଦେଣାପାଉଣା ହିସାବରେ ବ୍ୟସ୍ତ; କେଳା କେଲୁଣୀଙ୍କର ପ୍ରବେଶ)

କେଲୁଣୀ—ହଇଗୋ ସାଆନ୍ତାଣି ! ଗୋ ପୁଅମା ! ଗୋ ଗେଡ଼ିଏଁ ! ଗୋ ବାଙ୍ଗୁରିଏଁ ! ସାଆନ୍ତାଣି, ଭିକମୁଠିଏ ଦିଅ ଗୋ ସାଆନ୍ତାଣି ! ହଇଗୋ ସାଆନ୍ତାଣି ! !

ଗୀତ

କେଳା— କାଉକୁ ମାଇଲି କାଣ୍ଡେ (ଲୋ କେଲୁଣି)
କାଉ ଉଡ଼ିଗଲା କାଣ୍ଡ ଫେରି ଆସି
ପଇଲା ମୋହରି ମୁଣ୍ଡେ । (କେଲୁଣି ଲୋ)

କେଲୁଣୀ— ଭିକ ମାଗି ଖତ ଖାଉଁ (ଆରେ କେଳା)
କଳା ବଜାଇଙ୍କ ଦାଉରୁ ଏଣିକି
ଭିକ ମୁଠାକ ନ ପାଉଁ । (ଆରେ କେଳା)

କେଳା— ସାତ ଘର ବୁଲି ବୁଲି (କେଲୁଣି ଲୋ)
ମୁଠା ନ ପୂରଇ ଅଧେ ଗୃଉଳରେ
ଅଧେ ମିଶା ଗୋଡ଼-ବାଲି । (ଲୋ କେଲୁଣି)

କେଲୁଣୀ— ହେଲଣି ଯୁଗ ଖଣ୍ଡିଆ (ଆରେ କେଳା)
ଦାନା କନା କାହିଁ ଶୂନ୍ୟେ ହିରିଗଲା
ନ ମିଳେ ଚନା-ମାଣ୍ଡିଆ । (ଆରେ କେଳା)

କେଲୁଣୀ—ଦିଅ. ଗୋ—ଭିକମୁଠିଏ ସାଆନ୍ତାଣି ! ଗୋ ସାଆନ୍ତାଣି ! ଓ ଗେଡ଼ିଏଁ ! ଓ ବାଙ୍ଗୁରିଏଁ ! ଓ ପୁଅମା ! ଦିଅ ଗୋ ଭିକମୁଠିଏ ।

ବାହୁ ବଳର ହେଉ, ପୁଅ ବୁଢ଼ା ହେଉ, ମୁଠିଏ ଗୁଡ଼ଳ ଦିଅ
ଗୋ ! ଗୋ ସାଆନ୍ତାଣି ! !

କେଳା—(ଗୀତର ଶେଷାଂଶ)

ସାଆନ୍ତାଣୀ ସବୁ ବଖା (କେଲୁଣି ଲୋ)
(କେହ୍ବ) ବୋଲନ୍ତ ନଜକୁ ଦେଖା (କେଲୁଣି ଲୋ)
(ତୋର) ସାଆନ୍ତାଣୀ ଡାକ କେ ଆଉ ଶୁଣିବ
ଡାକ ଡାକ ଫେରି ଯିବା। (ଲୋ କେଲୁଣି)

(ନନ୍ଦାର ପ୍ରବେଶ, ଭିକ୍ଷା ପ୍ରଦାନ ଓ ପ୍ରସ୍ଥାନ; କେଳା କେଲୁଣୀଙ୍କର ପ୍ରସ୍ଥାନ)

୧ମ ଖାତକ—ଗୁମାସ୍ତାବାବୁ, ମୋର ହିସାବଟା ଭୁଲ କରଛ। ଟିକିଏ ଭଲକରି ଦେଖନ୍ତୁ। ଏତେଗୁଡ଼ାଏ ଟଙ୍କା କୁଆଡ଼ୁ ହେବ ?

ଗୁମାସ୍ତା—ହିସାବ ଠିକ୍ ଅଛି। ତେମେ ବୁଝ। ଅସଲ ନେଇଥିଲ ଟ୨•୦୯; ସୁଧ ତ ବେଶି ନାହିଁ। ଆଇନ ଉପରେ ସିନା ଲେଖା ହୋଇଛି ଶତକଡ଼ା ଟ୦୩। ଟିପା ଦସ୍ତଖତ କରିଦେଇଛ ଟଙ୍କାରେ ଟ୦୬; ସେଇ ରେଟ୍‌ରେ ହିସାବ ହୋଇଛି।

୨ୟ ଖାତକ—ଗୁମାସ୍ତାଏ ମୁଁ ତ ଅସଲ ଦେଇ ସାରିଛି। ଆଉ ବାକୀ କେବଳ ସୁଧ। ସୁଧ ଉପରେ ଫେର କଣ ସୁଧ କଷୁଛ ?

ଗୁମାସ୍ତା—ସୁଧ ବାକୀ ରଖି ଅସଲକୁ କୋଉଠି କିଏ ଅସୁଲ ନେଲଣି ? ତେମେ ଆଦୌ ବୁଝୁନା।

(ମଙ୍ଗରାଜଙ୍କର ପ୍ରବେଶ ଓ ଉପବେଶନ, ଖାତକମାନଙ୍କର ଅଭିବାଦନ)

୧ମ ଖାତକ—ଆଜ୍ଞା ଗୁମାସ୍ତା ମତେ ଏକାଠି ଚପି ଦଉଛନ୍ତି ହିସାବରେ।

ମଙ୍ଗ—କଅଣ ହେଉଛି କଣ ଗୁମାସ୍ତା ? ସୁଧ ବେଶ କଷିକରି ହିସାବ କର।

—ନିରୁପମା—

ଗୁମାସ୍ତା—କରିଛୁ ଆଜ୍ଞା, ସେ ବୁଝିପାରୁ ନାହାନ୍ତି । ତାଙ୍କ ଜବାବ ଅନୁସାରେ ହିସାବ ଠିକ କରି ଦେଇଛୁ ।

ମଙ୍ଗ—ଦେଖ ଆମେ କେବେ ଅନ୍ୟାୟ କରିବୁ ନାହିଁ । କାରବାର ସବୁ ଜବାବ ଉପରେ । ମଣିଷର ଜବାବ ହେଲା ମୂଳ । ଜବାବଭ୍ରଷ୍ଟ ହେଲେ ଲୋକର ଇହକାଳ ନଷ୍ଟ, ପରକାଳ ନଷ୍ଟ; ମୁଁ ତୁମ୍ଭର ଜବାବ ଭ୍ରଷ୍ଟ କରିବିନା ।

୧ମ ଖାତକ—ଆଜ୍ଞା ପାରିବ ନାହିଁ । ମତେ ଟଙ୍କା ଦିଆଯାଉ ।

ମଙ୍ଗ—ତାଙ୍କର ହିସାବରେ କେତେ ହେଉଛି ?

ଗୁମାସ୍ତା—ଅସଲ ଟ୨୦୦୧ ଟଙ୍କା । ସୁଧ ଟ୨୧୫।୵୬, ମୋଟ ଟ୪୧୫।୵୬ । ସୁଧ ବାବତକୁ ଅସୁଲ ଦେଇଛନ୍ତି ଟ୨୦୦୧ । ବାକି ଟ୨୧୫।୵୬ ।

ମଙ୍ଗ— ତାଙ୍କ କଥା ରହୁ । ତାଙ୍କୁ ଟ୦।୵୬ ଛାଡ଼ିଦିଅ ।

(ଚଉଧୁରୀଙ୍କର ପ୍ରବେଶ । ମଙ୍ଗରାଜ ଉଠିଯିବା—ପରସ୍ପର ଅଭିବାଦନ । ଚଉଧୁରୀଙ୍କୁ ଆଣିବା ଓ ଉଭୟେ ଉପବିଷ୍ଟ । ଗୁମାସ୍ତା ଓ ଖାତକମାନଙ୍କର ଚଉଧୁରୀଙ୍କୁ ଅଭିବାଦନ )

ଗୁମାସ୍ତା—ଆଜ୍ଞା !

ମଙ୍ଗ—ଗୁମାସ୍ତା, ତେମେ ସବୁ ଆଉ ଘରକୁ ଚାଲିଯାଅ । (ଗୁମାସ୍ତା ଓ ଖାତକମାନଙ୍କର ପ୍ରସ୍ଥାନ ) ସମୁଦି କିଛି ଖବର ନାହିଁ—ହଠାତ୍ କେମିତି ଚାଲି ଆସିଲେ ?

ଚଉଧୁରୀ—ଖବର କଣ ଦିଅନ୍ତି ? ଟିକିଏ ଚାଲି ଆସିଲି ।

ମଙ୍ଗ—ହଉ ହଉ ଭଲ କଲେ, ଘର ଆପଣଙ୍କର !

ଚଉ—ଆପଣଙ୍କ ସମୁଦୁଣୀଙ୍କ ଦେହ ଟିକିଏ ଅସୁସ୍ଥ ହୋଇ ପଡ଼ିଲା ।

ମଙ୍ଗ—କଣ ହୋଇଛି ? କଣ ହେଇଛି ?

ଚଉ—ଆପଣ ତ ଜାଣନ୍ତି ଆମର ସନ୍ତାନ ଭିତରେ ସେଇ ଏକମାତ୍ର ଝିଅଟି । ସେଇ ଆମର ଝିଅ, ସେଇ ଆମର ପୁଅ । ତାର ମୁହଁକୁ ଚାହିଁ ଦିନ କଟେଇବାର କଥା । ସେ ଚାଲିଆସିବା ପରେ—ମାଆର

ମନ ଭ—ତା ମା ରାତ ଦିନ କନ୍ଦାକଟା—ଖିଆ ନାହିଁ—ପିଆନାହିଁ ;
ସେଇଥିରୁ ଦେହ ଅସୁସ୍ଥ ହୋଇ ପଡ଼ିଛୁ । ଝିଅକୁ ଟିକଏ ଦେଖିଲେ
ହେଲେ ମନ ବଦଳି ଯାଇପାରେ । ଏଇ କଥା ଭାବି ମୁଁ ଆସିଲି ।
ଯେବେ ଅନୁମତି ଦିଅନ୍ତେ·········।

ମନ୍ତ୍ରୀ—ଏ କଥା ଆଉ ପଚାରିବାକୁ ଅଛି । ସମୁଦୁଣୀଙ୍କ ଦେହ ବେଶି । ଦିନା-
କେତେ ତାଙ୍କ ମନ ସମ୍ଭାଳି ହେବା କଠିଣ । ଝିଅକୁ ଦେଖିଲେ
ଟିକଏ ମନବୋଧ ହୋଇପାରେ ।

ଚଉ—ସେଇଥିପାଇଁ ମୁଁ ନିଜେ ଆସିଲି । ଝିଅକୁ ସଙ୍ଗରେ ନେଇ
ଯିବି ?

ମନ୍ତ୍ରୀ—ହଉ ନେଇଯିବେ । ଚାଲନ୍ତୁ ଉଆସ ଆଡ଼େ ଯିବା ।

(ଉଭୟଙ୍କର ପ୍ରସ୍ଥାନ)

——

—ଯବନିକା—

## ୪ର୍ଥ ଦୃଶ୍ୟ

### ପଲ୍ଲୀଗ୍ରାମର କପିଳ ବେହେରାର ଦାଣ୍ଡଦୁଆର

(ପଲ୍ଲିକୁଟୀର)

(କପିଳ ବେହେରା କାନ୍ଧରେ ତାଳପତ୍ର ଛତା—ଏକ ହାତରେ ଗାଈ ରଖା ବାଡ଼ି—ଅନ୍ୟ ହାତରେ ପିକାସହ ପ୍ରବେଶ—ଦୁଆରେ ହାତମାରି ଡାକିବା)

କପିଳ—ହଇଲେ ହେ ମାଳା ବୋଉ, ମାଳା ବୋଉ କୁଆଡ଼େ ଗଲୁ କଲେ ! ହଇଲେ ମାଳାବୋଉ ! ଗୋସେଇଁ ଖାଇ ଗଲା କୁଆଡେ । ହଇଲେ ମାଳା ବୋଉ ।

(ମାଳା ବୋଉ ଦରଜା ଫିଟାଇ ପ୍ରବେଶ)

ମାଳାବୋଉ—କଣ କହୋ ମାଳା ବୋପା । ଆଜି ଏତେ ଉଠିଆ ଡାକ କାହିଁକି ? ମାଳାବୋଉ ପାଇଁ କଣ ଆଣିଛ କି ?

କପିଳ—ନାହିଁ ମ ଆଣିବି କଅଣ ? ଇଲେ ଇଲେ ତୁ ଯିବୁଟି, କଣ ଗଣ୍ଡାଏ ଦବୁଟି । ମୁଁ ଝଟ୍‌କରି ଖାଇଦେଇ ବାହାରି ଯାଏ । ରନ୍ଧା ନ ହୋଇଥିଲେ ତୋରାଣି ମୁନ୍ଦାଏ ହେଲେ ଦେ ।

ମାଳାବୋଉ—କୋଉଠିକି ଯିବାକୁ ଏମିତି ନଣ୍ଡଭଣ୍ଡ ହେଉଛ ମ ? ଭାତ ବସେଇଛି, ଶାଗ କେରାଏ ବାଛୁଥିଲି, ଭାତ ଗାଳିବି, ଖରା ଖରଡ଼ିବି, ତେବେ ଯାଇ ଭାତ ଦେବି ନା !

କପିଳ—ନାହିଁ, ତେବେ ଚାଲ୍ ଚାଲ୍ ତୋରାଣି ମୁନ୍ଦାଏ ଦେ । ପିଇଦେଇ କେମିତି ଆଗେ ବାହାରିଯାଏଁ ।

ମାଳାବୋଉ—ଆଗେ ଗୋଡ଼ ହାତ ଧୋଇ ପକେଇବଟି ।

କପିଳ—ଗୋଡ଼ ହାତ କଣ ଧୋଇବ ? କେମିତି ଆଗେ ଯିବ ପର ! ଜରୁର କାମ ଅଛି । ଦେ କଣ ଆଣ୍ଟୁ ଆଣ ।

ନୀଳାବୋଉ—ମଲ୍‌ମୋର ! କଣ ଏମିତି କୋଉଠି ବରଡ଼ ଯାଉଛୁ କି ? ଏ ଅମଲ ଗୃହକରଆସାକ ଦଶ୍ଚୁଷ୍ଠା ନ ବାଜୁଣ୍ଡ ନାକରେ କାନରେ ଗୁଞ୍ଜିଦେଇ କଚରକ ଦଉଡ଼ିବା ନାଗି ଯେମିତି ନଣ୍ଡଭଣ୍ଡ ହୁଅନ୍ତି, ତେମେ କଣ ସେମିନ୍ତ ନଣ୍ଡଭଣ୍ଡ ହଉଚ ? ଏଡ଼େ ନଣ୍ଡଭଣ୍ଡ କାହିଁକି ମ ! କୋଉଠିକି ଯିବ କି ?

କପିଳ—ଇଲେ ସେ ମଙ୍ଗରାଜଙ୍କ ଗୁମାସ୍ତା, ପୁଅର ବାହାଘର; ମଙ୍ଗରାଜଙ୍କ ଘଟି ସବୁ ହଉଛି । ଦୁଧ ମହଣେ, ଦହି ମହଣେ ଦେବା ପାଇଁ ମୋ ଜିମାରେ ଟଙ୍କା ଧରେଇ ଦେଇଛନ୍ତି । ଆଜି କାଲି ଦୁଧଦହି ଯେମିତି ଛନ୍‌ଗୁଟିଆ, କେମିତି ଆଗେ ବଇନା ଧରେଇ ଦେଇ ଆସିଲେ ଛୁଟି ।

ନୀଳାବୋଉ—ହଉ ଟିକଏ ବସ, ମୁଁ ଶାଗ କେସ୍ତୁକ ଖରଡ଼ି ଦିଏଁ ! ଖାଇକ—ଯିବ । ହେ ନୀଳାବୋପା ! ମୁଁ ଗୋଟାଏ କଥା ପଚ୍ଛରନ୍ତି !

କପିଳ—କଣ ପଚ୍ଛର ।

ନୀଳାବୋଉ—ହଁ ହଁ ପଚ୍ଛରବ ? ପଚ୍ଛରବ ? ତେମେ କହିବ ନା ? କହିବ ?

କପିଳ———ଇଲୋ ପଚ୍ଛରେ, ନ କହିବ କାହିଁକି ?

ନୀଳାବୋଉ—ଭଲ କହିଲ, ମଙ୍ଗରାଜ ପୁଅକୁ ତ ସେ ଦିନ ବାହା କର-ଥିଲେ: ବୋହୂଟିକି କାଢ଼ିଦେଲେ କାହିଁକି ?

କପିଳ—ନାହିଁ ତ ! କିଏ କହିଲା କାଢ଼ିଦେଲେ । ବୋହୂ ମା କଣ ବେମାର ହେଇଚି । ସେଇଥିପାଇଁ ବୋହୂ ବାପ ଆସି ତା ଝିଅକୁ ନେଇ ଯାଇଛି ନା !

—ନିରୁପମା—

ମାଳାଦେ।ଈ—ମଲ୍ ଝିଅ। ବୁଝିଛ ? ତେବେ ତ କିଛି ବୁଝି ନା । ତାହାଘର ପାଇଁ ଦହିଦୁଧ ବରାଦ ଅଣିଛ । କିଏ ତାହା ହବ ସେଠିକା ବୁଝି ନା । ଆମେ ମାଇପେ କଣ ମିଛରେ କହୁଁ ଯେ ମିଣିପେ ଗୁଡ଼ାକ ଭୁଛା ଓଲୁ, ଖାଲି ହୁଣ୍ଡା । ଖାଲି ଦାଣ୍ଡରେ ଦାଣ୍ଡରେ ବୁଲନ୍ତି । ଉପରେ ଉପରେ ଖେଳନ୍ତି । ଭିତର କଥା କିଛି ଜାଣିପାରନ୍ତି ନାହିଁ ।

କପିଳ—ତୁ ଆଉ କଣ କହୁଛୁ ?

ମାଳାଦେଈ—ଶୁଣିବ, ଶୁଣିବ, ଅସଲ କଥା ଶୁଣିବ ?

କପିଳ—କଣ କହ ।

ମାଳାଦେଈ—ମଙ୍ଗରାଜଙ୍କ ବୋହୂ ଆସିବା ଦାସିଦିନ କୁଆଡ଼େ ଜଣା-ପଡ଼ିଲା ଯେ ତା ଦେହରେ ଖଣ୍ଡେ ବଡ଼ବେମାର ଛଉ ଅଛି । ସେମିତି ସବୁ ଭୂଟିଖାଟି ହେଲେ, ବୋହୂ ବାପ ଆସି ଝିଅକୁ ନେଇଗଲା । ମଙ୍ଗରାଜେ ଗୁମାସ୍ତା ପୁଅକୁ ବାହା କରିବା ବାହାନାରେ ଆଉ ଗୋଟିଏ କନିଆ ସଜାଳ କରିଛନ୍ତି । ତାହା-ଦେଲକୁ ଆପଣା ପୁଅକୁ ବର କରି ନେଇ ବେଦିରେ ବସେଇ ତାହା କରେଇ ଆଉ ଗୋଟିଏ ବୋହୂ ଆଣିବେ ।

କପିଳ—ତୁ ଏତେ କଥା କେମିତି କୋଉଠୁ ଜାଣିଲୁ ? ଏଗୁଡ଼ାକ ଭୁଛା ମିଛ; ମୁଁ ତ ଟିକିଏ କିଛି ଶୁଣି ନାହିଁ । (ମାଳାର ପ୍ରବେଶ) ଝିଲେ ପୁଅ ଆଜି କଣ ଏତେବେଳୁଁ ଗୁହାଳୀ ଛୁଟି ହୋଇ-ଗଲା କି ?

ମାଳା—ନାହିଁ ବାପା, ଛୁଟି ହୋଇ ନାହିଁ । ଆଜି ଗୁହାଳିକି କୁଆଡ଼େ କିଏ ଡାକ୍ତର ଆସିବେ । ଯାହାଙ୍କର ଦେହରେ କାଛୁ, କୁଣ୍ଡିଆ, ଯାଦୁ, କନ୍ଦା କି କିଛି ଘା ଫା ଅଛି, ତାଙ୍କୁ ସବୁ ଛୁଡ଼ିଦେଲେ । ମୋ

ଆଙ୍ଗୁଠିଟା ସେ ଦନ ଛେଚା ହୋଇ ଯାଇଥିଲା, ଟିକିଏ ଫୁଲିଛି, ମୁଁ ଦେଖେଇଦେଇ ଚାଲି ଆଇଲି ।

କପିଳ—ହଉ ଭଲକଲୁ ।

ମାଳା—ବାପା ମ ! ବାପା ! ମାଷ୍ଟ୍ରେ କହୁଛନ୍ତି ଆଉ ଏଣିକି ମୋ ନା ମାଳା ନୁହେଁ । ମୋ ନା ମାଳାମ୍ବର ବେହେରା । ମତେ ମାଳା ମାଳା ଆଉ କେହି ଡାକିବେ ନାହିଁ । ମାଳା ଡାକିଲେ ମୁଁ ଆଉ ଶୁଣିବ ନାହିଁ ।

କପିଳ—ହଉ ବାପା, ତୋ ନାଁ ମାଳା ଆଉ କେହି ଡାକିବେ ନାହିଁ ।

ମାଳାବୋଉ—ମୋ ବାପ ! ମୋ ଧନ ! ଅ: ଆ ମୁଁ ଶାଗ ଖରଡ଼ ସାରେଁ । ବାପା ଯାଙ୍ଗରେ ଖାଇବୁ । ଖାଇସାରି ଟିକିଏ ଶିବୁ, ଗାଈଙ୍କୁ ଅନେଇବୁ । ବାପା କୁଆଡେ ଯାଉଛି । ବାପା ଫେରି ଆସିଲେ ଚାଲି ଆସିବୁ ।

ମାଳା—ନାଇଁଲୋ ବୋଉ, ମାଷ୍ଟ୍ରେ ତ ମନା କରିଛନ୍ତି । ମୁଁ ଆଉ ଗାଈ ରଖିବାକୁ ଯିବ ନାହିଁ । ମତେ ଦଟା ଜାମା କଣିଦବୁ, ଯୋଡ଼ା ଯୋଡା କିଣିଦବୁ, ମୁଁ ଜାମା ପିନ୍ଧିବ, ଯୋଡା ମାଡ଼ିବ,ପାଠ ପଢ଼ିବ, ଚାକିରି କରିବ, ବାବୁ ହେବ । ଆଉ ଗାଈ ରଖିବାକୁ ଯିବ ନାହିଁ ।

କପିଳ—ମୁଁ ଟିକିଏ ଦଉଡ଼ିଯାଇ ଗାଈ କେଇଟାଙ୍କୁ କାହା ଜିମା କରି ଦେଇ ଆସେଁ । ଝଟ ଝଟ ଶାଗ ଖରଡ଼ି ଭାତ ବାଢ଼ ।

(କପିଳର ପ୍ରସ୍ଥାନ)

ମାଳାବୋଉ—ମୋ ବାପ ! ମୋ ଧନ ! ଖାଇସାରି ଟିକିଏ ଶିବୁ । ଗାଈ-ଗୁଡାକ ଏଣେତେଣେ କାହା ବିଲ ବାଡ଼ିରେ ପଶିବେ । ତୋ ନାଗି ଛେନା ରଖିଛି, ଗୁଡ଼ ରଖିଛି । ଗାଈରୁ ଆସିଲେ ଦେବି ଖାଇବୁ । ମୋ ବାପ ! ମୋ ଧନ ! ଖାଇସାରି ଟିକିଏ ଶିବୁ, ଶିବୁଟି ?

ମାଳା—ହଉ ଶିବ ।

—ନିରୁପମା—

## ଗୀତ

(କଳାକାଇଁଚ ବାଣୀରେ ଗାଇବ)

(ବାପ) ଯାଆନାରେ ଆଉ ପାଠ ପଢ଼ି,
ଘରପୁଅ ଘରେ ଥାଆ, ପାଠ ତୁ ନ ପଢ଼ି ।
ଯେତେ ପାଠ ପଢ଼ିଲୁଣି ସେତିକରେ ଆଉ,
ପାଠ ପଢ଼ ହଟହଟା ନ ହୁଅ ତୁ ଆଉ ।
ପାଠ ପଢ଼ିଲେ ତ ଭୁଲିଯିବୁରେ ମାଆକୁ,
ତଣବୁ ଯିନା ବାପାକୁ ବାପା ଡାକିବାକୁ ।
ପାଠ ତୁ ପଢ଼ିଲେ ଧନ ଖୋଜିବୁ ଗୃହକର୍ତ୍ତା,
ଗୃହକଣଆ ହେଲେ ଯିବୁ ମଣିଷରୁ ସଣ ।
ପାଠ ତୁ ପଢ଼ିଲେ ଜାତି ମହତ ବୁଡ଼ିବ,
ମୋ ଘରକରଣାଟିକ ସବୁ ତୁଟିଯିବ ।
ଗାଈ ଗୋରୁ, ଦୁଧ ଘିଅ କିଛି ତ ନ ଥିବ,
(ବାପ ଶୂନ୍ୟେ ହଣଯିବ)
ଏ ସୁଖସମ୍ପଦ ଆଉ କିଛି ନ ରହିବ ।
ପାଠ ତୁ ପଢ଼ିଲେ ବୋଲ ନ ମାନିବୁ ମୋର,
ବେଶି ପାଠ ପଢ଼ି ଶେଷେ ହେବୁ ଯିନା ଘେର ।
ପାଠ ପଢ଼ି ଯେବେ ନିଜ ବୁଦ୍ଧି ନିଜେ ଛାଡ଼,
ସେ ପାଠ ପଢ଼ି ତୁଚ୍ଛାକୁ ହେବୁ କମ୍ପା ମୂଢ଼ ?

---

# ପଞ୍ଚମ ଦୃଶ୍ୟ

'ଗ୍ରାମର ଗୋଚ୍ଚରଣ ଭୂମି

(ଗୋପାଳ ବାଳକମାନଙ୍କର ନୃତ୍ୟ ଓ ଗୀତ)

ଗଉଡ଼ଆ ଭାଇ ରେ—                    କଉଡ଼ି ଗଣି ତୁ ନେ
ସେରକ ଦୁଧରେ ସେରେ ପାଣି ମିଶା
ଠେକଟି ପୂରାଇ ଦେ ।
ହୋଇଗଲାଣି ଏ ଯୁଗ                    ସମ ଭାଉ ଶାଗ ମୁଗ
ଏ ଯୁଗ ଜଣିବା ବାଟ ନ ଜାଣିଲେ
କାହାକୁ ଦୋଷିବ କିଏ ।
ବାପାକୁ ନ ଦେଲେ ଧପା                ବୋଉ ହେବ ଆଗେ ଝପା
ଘର ଭାଙ୍ଗିଯିବ ପର ହସୁଥିବେ
ତାକୁ ସମ୍ଭାଳିବ କିଏ ।
ତେଲୁଆ ମୁଣ୍ଡରେ ତେଲ                  ତହିଁ ମିଶିଥିବ ଭେଲ
ବେଳ ଉଣ୍ଡି ଖେଳ ଖେଳ ଯେ ନ ଜାଣେ
ଶୂଳ ପାଉ ଆଗେ ସେ ।
(ପ୍ରସ୍ଥାନ )

———

—ଯବନିକା—

# ଷଷ୍ଠ ଦୃଶ୍ୟ

## କପିଳ ବେହେରା ଦାଣ୍ଡ

(ପ୍ରାଇମେରୀ ସ୍କୁଲ ଶିକ୍ଷକ ଦୁଇ ଜଣଙ୍କର ପ୍ରବେଶ)

ଶିକ୍ଷକ— ମାଳାମ୍ବର, ମାଳାମ୍ବର ! (ମାଳାବୋଉର ପ୍ରବେଶ)

ମାଳାବୋଉ—ଜିଏ ମାଷ୍ଟରେ ! ମାଳା ତ ନାହିଁ, ଗୋଠକୁ ଯାଇଛି ।

ଶି:— କଣ ଗାଈ ରଖିବାକୁ ? ତେବେ ସେଇଥିଲାଗି ଆଙ୍ଗୁଠିରେ କଣ ହୋଇଛି ବୋଲି କହି ପଳେଇ ଅଇଲା । ଆମେ କହିଲୁ କଅଣ ହେଇଛି ବୁଲି ଅାସିବା । ତାକୁ ଗାଈ ରଖିବାକୁ ତେମେ ପଠେଇ ଦେଲଣି !

ମା-ବୋଉ—ନାଇଁ ତା ବୋପା ଗୋଟା କାମରେ କୁଆଡ଼େ ଗଲେ । ସେ ଅାସିବାଯାଏ ଟିକିଏ ଗାଈଗୁଡ଼ାଙ୍କୁ ଜଗାଳିବାକୁ ଯାଇଛି ।

ଶି:— ତେମେ ଖୁବ ଭୁଲ କାମ କରୁଛ । ପୁଅକୁ ପାଠ ପଢ଼େଇବ ତ ପାଠ ପଢ଼ାଅ; ନ ହେଲେ ଗାଈ ରଖେଇବ ତ ଗାଈରଖାଅ । ପାଠପଢ଼ା ଆଉ ଗାଈରଖା ଦୁଇ କାମ ଏକାଠି ଚଳିବ ନାହିଁ ।

ମା-ବୋଉ—ହଉ ଆମ ମଳା ତେବେ ଆଉ ପାଠ ପଢ଼ିବ ନାହିଁ ।

ଶି:— ଆଁ—ପାଠ ପଢ଼ିବ ନାହିଁ ? ଇଏ ଗୋଟାଏ କଥା । ନା ନା ନା, ତା କହ ନା । ପୁଅ ପାଠ ପଢ଼ିବ, ଚାକିରୀ କରିବ, ମୁଠା ମୁଠା ଟଙ୍କା କମେଇବ, ଏ ଘରଦୁଆର ସବୁ ଝୋବଲି ହୋଇଯିବ । ତମକୁ ଆଉ ଗୁହାଳ ପୋଛିବାକୁ ପଡ଼ିବ ନାହିଁ । ପୁଅ ପାଠ ପଢ଼ିବ ନାହିଁ କହୁଛ ? ତା କହ ନା, ତା କହ ନା ।

ମା-ବୋଉ—ମାଷ୍ଟ୍ରେ ! ତେମେ ମାସରେ କେତେ ଟଙ୍କା କମଉଛ ?

ଶି:— ଆମେ, ଆମେ—ଆମ କଥା କାହିଁକି ପଚାରୁଛ ? ଆମେ ପାଉଥିଲୁ ଆଗେ ପାଞ୍ଚଟଙ୍କା, ଆମ କର୍ମକୁ କଡ଼େଇ ନାଗିଲା । ସେଥିରୁ ପାଉଛୁ ଏବେ ଟ ୧୦୯-ଟ, ୧୨୯; କିନ୍ତୁ ଯୋଉ ମହଙ୍ଗା କାଳ ହେଇଛୁ, ଏ କୋଡ଼ିଏ ବାଇଶି ଟଙ୍କା ସେ ପାଞ୍ଚ ଟଙ୍କାକୁ ସରି ନୁହେଁ । ତେତେବେଳେ ତ ପେଟପୂରା ମୁଠା ଭାତ ଖାଉ-ଥିଲୁଁ—ମୋଟା ଗୋଟା କରି ଖଣ୍ଡେ ଲୁଗା ପିନ୍ଧୁଥିଲୁ, ଆଜି ସେତକ ବି ନାହିଁ ।

ମା-ବୋଉ—ମୁଁ ତ ଘଷିଗୁଣ୍ଡା ବିକେଁ ମାସରେ କୋଡ଼ିଏ ଟଙ୍କା ପଚାଶ ଟଙ୍କାର । ସେତକ ମୋର ହାତପାଣ୍ଠି । ମାଲାବୋପା କେତେ କଣ କମାନ୍ତି ସେ ଜାଣନ୍ତି । ମାଲା କଣ ଆଉ ତମଠଉଁ ବେଶୀ ପାଠ ପଢ଼ିବ ? ନା ପାଠ ପଢ଼ି ତମଠଉଁ ବେଶୀ କମେଇ ପାରିବ ? ତୁଚ୍ଛାକୁ କାହିଁକି ପାଠ ପଢ଼ିବ ? ହଉ ତେମେ ଏଇଷିକି ଯାଇଥାଅ । ମାଲାବୋପା ଆସନ୍ତୁ ସେ ଯାହା କହିବେ ।

(ମାଲାବୋଉର ପ୍ରସ୍ଥାନ)

ଶି:— ଭଲ କଥା କହିଲ ତ ମାଲାବୋଉ ! ସେ ଘଷିଗୁଣ୍ଡାରୁ ମାସରେ ଆୟ କରେ କୋଡ଼ିଏରୁ ପଚାଶ ଟଙ୍କା ।

ଗୀତ

(ଝିଞ୍ଜିଟ ଦାଦରା)

(ଆମେ) ପ୍ରାଇମେରୀ ସ୍କୁଲ ଟିଚର
ଆମର ଗ୍ରୁପ୍ ଲଟ ବଡ଼ଲଟ
We are poor creature
(ଆମେ) ଅଳପ ଦରମା ପାଉଁ
ଦରମା ଗଣ୍ଡିକ                    ପାଇବା ପାଇଁକି
ମାସ ମାସ ଗ୍ଭହିଁ ଥାଉଁ, (ଭୋକ ଉପାସରେ ରହୁଁ)

—ନିରୁପମା —

ସଭା ସମିତିରେ ଆଗ ସନମାନ
ଗଳାରେ ଫୁଲମାଳ ଖାଉଁ ।
(ଆମେ) ପ୍ରାଇମେରୀ ସ୍କୁଲ ଟିଚର
ଆମର ଛାତ୍ର ଜଜ୍ ବାରିଷ୍ଟର
ଆମର ଛାତ୍ର ପ୍ଲିଡ଼ାର,
ଆମର ଛାତ୍ର ଜିଲା କଲେକ୍ଟର
ଆମର ଛାତ୍ର ଲିଡ଼ର ।
ଯେତେ ଯେ ଦେଶରେ ବଡ଼
ସମସ୍ତେ ଉଠିଲେ ଆମର ପାଠରୁ
ଆମର ତାଲିମ ଜଡ଼,
ଆମ ଦୁଃଖ ସୁଖ ବୁଝିବ କେଉଁ
ସମସ୍ତେ ଖୋଜନ୍ତି ମୋଡ଼ ।
(ଆମେ) ପ୍ରାଇମେରୀ ସ୍କୁଲ ଟିଚର
ଆମର ଛାତ୍ର ଚିଫ୍ ଜଷ୍ଟିସ୍,
ଚିଫ୍ ମିନିଷ୍ଟର ସ୍ପିକର,
ଆମର ଛାତ୍ରୀ ଇନ୍‌ସପେକ୍ଟ୍ରେସ୍
ଲେଡି ଡକ୍ଟର, ସିସ୍ଟାର ।
[ଯବନିକା ପତନ]

———

—ନିରୁପମା—

# ତୃତୀୟ ଅଧ୍ୟାୟ

## ପ୍ରଥମ ଦୃଶ୍ୟ

କର୍ମକୁଟୀର

(ନିରୁପମା ଉପବିଷ୍ଟା।

ଗୀତ

ସୁଖ ଦୁଃଖ ସବୁ ମନର କଳ୍ପନା
ମନ ଯେପରି ଜନ ହୁଏ ସିନା ବଣା ।
ସୁଖ ବୋଲି ଯାକୁ ମଣୁ ଏହି କ୍ଷଣେ
ମହା ଦୁଃଖ ତାକୁ ଗଣୁ ପରକ୍ଷଣେ,
ଜଗତେ ଏ ନୀତ ଦେଖୁଁ ନୀତ ନୀତ
ନୁହଇ କାହାର ଅଶୁଣା ଅଜଣା ।
ଭୋଗୀ ଭୋଗ ଦୁଃଖ ବୁଝେ ରୋଗ ବେଳେ,
ଧନୀ ଧନ ଦୁଃଖ ହେଜେ ମୃତ୍ୟୁକାଳେ,
ଯେବେ ଯାହା ଘଟେ ସବୁ ସୁଖମୟ
ଯେ ମଣେ ସେ ତାର ଅସୀମ ସାଧନା ।

(ଚନ୍ଦ୍ରଶେଖରଙ୍କର ପ୍ରବେଶ)

ଚନ୍ଦ୍ର—ନିରୁପମା ! ତୁମେ ଏଠାକୁ ଚାଲି ଆସିଛି, ଭଲ ହେଲା ।

ନିରୁ—କିପରି ଜାଣିଲ, ମୁଁ ଏଠାରେ ଅଛୁ ?

ଚନ୍ଦ୍ର—(ହସି ହସି) ଜାଣିଲି ? ତମଠାରୁ । ତୁମେ ଜାଣିପାର ନ ଥିବ, କିନ୍ତୁ ତମର ମନ ଗୋପନେ ଗୋପନେ ଯାଇ ମତେ କହି ଦେଇ

ଆସିଲି । ତୁମରି ହୃଦୟର ଡୋରି ମତେ ଏଠାକୁ ଟାଣି ଆଣିଲା । ସେ ଯାହାହେଉ ଆଜି ତମ ମୁହଁ ପ୍ରଫୁଲ୍ଲ ଦେଖି ମୋ ମନରେ ଘୋର ଆନନ୍ଦ ହେଉଛି ।

ନରୁ—ସେ ଦିନ ଯେଉଁ ସୂଚନା ଦେଇଗଲ, ସେଇ ସୂଚନା ମଧ୍ୟରେ ଯେ ପ୍ରଫୁଲ୍ଲତାର ଇଞ୍ଜେକ୍‌ସନ ଦେଇ ଯାଇଥିଲ, ମନେ ନାହିଁ ସତ୍ରା ! ତାହାର ଫଳ ଏତକ ସିନା !

ଚନ୍ଦ୍ର—ମୁଁ ଗୋଟିଏ କୁଟୀରର କଳ୍ପନା ମାତ୍ର କରିଥିଲି । ତମେ ଯେ ସତକୁ ସତ ତାକୁ ଏତେ ଶୀଘ୍ର ଏପରି ଗୋଟିଏ ରୂପରେଖ ଦେଇ ଗୋଟିଏ ପ୍ରକୃତ କୁଟୀର ଗଢ଼ି ଥୋଇଦେଇ ପାରିବ, ଏହା କଅଣ ମୁଁ ସ୍ୱପ୍ନରେ କେବେ ଭାବିଥିଲି ? ମୁଁ କେବଳ ଆଶା କରିଥିଲି ଯେ ତମେ ମୋହର ସହଧର୍ମିଣୀ, ମୋର ସହକର୍ମିଣୀ ହେବ । ବର୍ତ୍ତମାନ ଦେଖୁଛି ଯେ ମୁଁ ତମର ସହକର୍ମୀ ହେବି । କୁଟୀର-ଶିଳ୍ପର କାମ ତ ଆରମ୍ଭ କରିଦେଇ ସାରିଲଣି ।

ନରୁ—ଆଗରୁ ଏ ଘରଟି ଥିଲା । ବାବା ଏହାକୁ କୁଟୀରଶିଳ୍ପ ଶିକ୍ଷା ପାଇଁ ଛାଡ଼ିଦେଇ ଅଛନ୍ତି । ପାଖରେ ଆଉ ଗୋଟିଏ ଘର କୁଷ୍ଠସେବା ପାଇଁ ତୋଳା ହେଉଛି । ପଡ଼ିଆ ଜମି ପ୍ରାୟ ଦୁଇବାଟି ହେବ, ତାହା ସାଙ୍ଗକୁ ଲଗିକରି ଅଛି । ତହିଁରେ ବଗିଚା ଓ କୃଷି କରାଯାଇ ପାରିବ ।

ଚନ୍ଦ୍ର—ଭଗବାନଙ୍କର ଶୁଭେଚ୍ଛା ପୂର୍ଣ୍ଣ ହେଉ । ପ୍ରଭୁ ଆମ୍ଭମାନଙ୍କୁ ଶକ୍ତି, ଶ୍ରଦ୍ଧା, ସୁବୁଦ୍ଧି ଓ ଅନୁରକ୍ତି ଦିଅନ୍ତୁ । ଆମ୍ଭେମାନେ ଏହି ସେବା-ବ୍ରତ ପାଇଁ ସମର୍ଥ ହେଉଁ । ଆଜି ତମର ଇଞ୍ଜେକ୍‌ସନ ନେବାର ଶେଷପାଳି । ଚାଲ ଇଞ୍ଜେକ୍‌ସନ୍ ଦିଏଁ ।।

ନରୁ—କେହି ଡାକ୍ତର ବା କମ୍ପାଉଣ୍ଡର ଆସିଥିଲେ କଅଣ ହୋଇ ନ ଥାନ୍ତା ? ତମେ କାହିଁକି ଆସିଲ ? ତମେ ଏତେ ମୋ ସଂସର୍ଗରେ ନ ଆସିଲେ ଭଲ ।

—ନରୁପମା—

ଚନ୍ଦ୍ର —(ହସି ହସି) କାହିଁକି ? ତୁମେ ଭାବୁଛ ମୁଁ ତମକୁ ଗୁହଁ ଲେ କି ଛୁଇଁଲେ ସେଗଟା କାଳେ ମୋ ଉପରକୁ ଡେଇଁପଡ଼ିବ ପରା ? ତମର ଏ ଧାରଣା ସମ୍ପୂର୍ଣ୍ଣ ଭୁଲ । ତମ ମନ ଓ ତମ ସ୍ନେହର ଯେପରି ଡେଇଁବାର ଶକ୍ତି ଅଛି, ଏ ରୋଗର ଯଦିଓ ସେପରି ଶକ୍ତି ନାହିଁ । ତମ ରୋଗର ତ ଆଦୌ ସଂକ୍ରାମକ ଅବସ୍ଥା ହୋଇ ନ ଥିଲା । ଠିକ୍ ସମୟରେ ଧରା ପଡ଼ିଲା ଓ ଚିକିତ୍ସା ଆରମ୍ଭ ହୋଇଗଲା । ରୋଗ ଆରୋଗ୍ୟ ହୋଇଗଲାଣି ।

ନିରୁ—କେଜାଣି ମୁଁ ବିଶ୍ୱାସ କରି ପାରୁ ନାହିଁ, କାଳେ ଅନ୍ତରେ ଥିବ ।

ଚନ୍ଦ୍ର—ନାହିଁ ତା ନୁହେଁ, ଯାହାଙ୍କର ରୋଗ ସଂକ୍ରାମକ ହେଲାଣି ତାଙ୍କୁ ଛୁଇଁଲେ ମଧ୍ୟ ରୋଗ ସହଜରେ ଡେଇଁପାରେ ନାହିଁ । ମୁଁ ଏ ସମ୍ବନ୍ଧେ ଭଲକରି ଅଧ୍ୟୟନ କରି ସାରିଲିଣି । ତୁମକୁ ମଧ୍ୟ ଏଗୁଡ଼ିକ ଶିଖିବାକୁ ହେବ । ଏହି ବହି ଖଣ୍ଡିକ ରଖ – ଭଲକରି ପଢ଼ିବ । (ପୁସ୍ତକ ଦାନ) ଏହାହିଁ ଆମ୍ଭମାନଙ୍କର ବ୍ରତ ହେବ । ଭଲ କରି ଜାଣିବା ଉଚିତ ।

ନିରୁ—କଅଣ କହୁଛ ? ସଂକ୍ରାମକ ହେଲେ ବି ଛୁଇଁଲେ ଡେଇଁବ ନାହିଁ ?

ଚନ୍ଦ୍ର—ହଁ ବହିଖଣ୍ଡି ପଢ଼ିଲେ ବୁଝିପାରିବ । କୁଷ୍ଠରୋଗର ଜୀବାଣୁ-ଗୁଡ଼ିକ ସାଧାରଣତଃ ଚମ ଉପରେ ରହନ୍ତି ନାହିଁ; ରହନ୍ତି ଚମ ତଳେ । ରୋଗୀ ଦେହରେ ଘା ହେଲେ ବା କୌଣସି ରୂପେ ଚମ ଛିଣ୍ଡିଗଲେ ଜୀବାଣୁ ଉପରକୁ ବାହାରନ୍ତି । ସୁସ୍ଥ ଶରୀରରେ ଖାଲି ଉପରେ ଲାଗିଲେ ମଧ୍ୟ କିଛି ହେବ ନାହିଁ । ସାବୁନ ଦେଇ ଧୋଇଦେଲେ ଗଲା ।

—ନିରୁପମା—

ନରୁ— ତେବେ ଲୋକେ ଏତେ ଡରନ୍ତି କାହିଁକି ?

ଚନ୍ଦ୍ର—ଡରିବାର କାରଣ ଅଛି । ସୁସ୍ଥ ଶରୀରରେ ଯେବେ କିଛି ଘା ବା କୌଣସି ପ୍ରକାର କିଛି ଟିକିଏ କ୍ଷତ ଥିବ—ମଶା କି ଛାରପୋକ କାମୁଡ଼ିଥିବା ଜାଗାରେ ମଧ୍ୟ—କୁଷ୍ଠରୋଗର ଜୀବାଣୁ ଲାଗିଲେ ସୁସ୍ଥ ଶରୀରରେ ପଶିଯିବେ । ସବୁ ସମୟରେ ସମସ୍ତେ ସାବଧାନ ହୋଇ ନ ପାରନ୍ତି ।

ନରୁ—ସାବଧାନ ହୋଇପାରିଲେ କିଛି ଡର ନାହିଁ ?

ଚନ୍ଦ୍ର—ହଁ, ଦେଖୁଛ ତ ଡାକ୍ତରମାନେ କେତେ ଶହ ଶହ କୁଷ୍ଠରୋଗୀଙ୍କ ସମ୍ପର୍କରେ ଆସୁଛନ୍ତି । କାହିଁ ତାଙ୍କୁ ତ ରୋଗ ଧରୁ ନାହିଁ । ଏଇଥିରୁ ସହଜରେ ବୁଝିପାରିବ । ରୋଗୀଙ୍କ ଦେହରେ ଘା'ରେ ହାତ ଲଗାଇ ମଧ୍ୟ ହାତକୁ ସାବୁନରେ ଧୋଇଦେଲେ ଗଲା ।

ନରୁ—ସତେ କଅଣ ମୋର ରୋଗ ଗଲାଣି ?

ଚନ୍ଦ୍ର—ବୁଝି ପାରୁଛି ତୁମ୍ଭ ଦେହରୁ ରୋଗ ଗଲାଣି । କିନ୍ତୁ ତୁମ୍ଭ ମନରୁ ରୋଗ ଛାଡ଼ି ନାହିଁ । ଏଥର ଡାକ୍ତରଙ୍କୁ ଡାକିଆଣି ପରୀକ୍ଷା କରେଇଦେବି । ତାଙ୍କ ମୁହଁରୁ ଶୁଣିଲେ ତମ ମନରୁ ସନ୍ଦେହ ଯିବ । ଦେଖୁଛ ତ ଛଉଁକିଣ୍ଡି ଯାହା ହୋଇଥିଲା, ତାର ଚିହ୍ନ ଆଉ ନାହିଁ । ଯାହା ହୋଇଥିଲା ତାହା ସ୍ନାୟୁଗତ ଥିଲା । ଭଲ ହୋଇ-ଗଲାଣି । ଆଉ କିଛି ନାହିଁ ।

ନରୁ—କେଜାଣି, ମୋ ମନ ମାନୁ ନାହିଁ ।

—ନରୁ ପ୍ରମା—

ଚନ୍ଦ୍ର - ଆଚ୍ଛା, ମୁଁ ଆଉ ଥରକୁ ଡାକ୍ତରଙ୍କୁ ଡାକିଆଣେ—ତାଙ୍କୁ ସବୁ କଥା ପଚାରି ବୁଝିଲେ ମନ ମାନିବ । ଆଉ ଗୋଟାଏ କଥା ମନେ-ରଖିବୁ, ଏଠାରେ କାହାରିକୁ ଆମ୍ଭମାନଙ୍କର ପରିଚୟ କହିବ ନାହିଁ । ଆବଶ୍ୟକ ହେଲେ ତମ ନା କହିବ ନିର୍ମଳ ସେବିକା, ମୋ ନାଁ କେହି ଖୋଜିଲେ କହିବ ଚନ୍ଦ୍ରଜୀବନ ସେବକ । ଆସ ମୁଁ ଏହି ଶେଷ ଥର ଇଞ୍ଜେକ୍‌ସନ ଦେଇ ଶୀଘ୍ର ବାହାରି ଯିବା ।

(ଉଭୟଙ୍କର ପ୍ରସ୍ଥାନ)

— — — —

—ଯବନିକା—

## ଦ୍ୱିତୀୟ ଦୃଶ୍ୟ

### ଗ୍ରାମ୍ୟ ପଥ

(ଖଞ୍ଜଣି ସହ ଗୀତ ଗାଇ ଗାଇ କୁଷ୍ଠନିବାରଣୀ ସଂଘର
ପ୍ରଚାରକମାନଙ୍କର ପ୍ରବେଶ)

ଗୀତ

କୁଷ୍ଠରୋଗୀ ସଂଖ୍ୟା ବଢ଼ୁଛି
ଗୃହୁଁ ଗୃହୁଁ ଦେଶେ ଗ୍ରାମରୁ ଗ୍ରାମକୁ
ଧୀରେ ଧୀରେ ରୋଗ ମାଡ଼ୁଛି ।
ବଡ଼ରୋଗ ନାମ ତାହାର
ବଡ଼ ଅନରୋଗ ରୋଗୀଏ ଜନଙ୍କୁ
ଅଙ୍ଗେ ଆଶ୍ରୀକରେ ଯାହାର ।
ଅତି ସାଧାରଣ ଆଦ୍ୟରେ
ପୋଡ଼ା ଜଳା ପୀଡ଼ା ଛଲେ କିଛି ନାହିଁ
ଲୁଚି ରହେ ଚମ ଭିତରେ ।
ଏକାଳେ ଯେବେ ନ ଜଗିବ
ଧୀରେ ଧୀରେ ତାର ଚେର ମାଡ଼ିଯିବ
ଜୀବ ଥିବାଯାଏ ଭୋଗିବ ।
କ୍ରମେ ଫୋଟିଯିବ ଅଙ୍ଗରେ
ଅଙ୍ଗକୁ ବିଭଙ୍ଗ କରି ଥୋଇଦେବ
ଘାରି ହେବ ତାହା ଢଙ୍ଗରେ ।
ସାଧୁଜନେ ଭଲ ଚାଉଁକୁ
ବେଳହୁଁ ମୂଳରୁ ଏ ରୋଗକୁ ମାରି
ନିଜ ହିତ ପର ହିତକୁ ।

( ଗୀତ ଗାଇ ଗାଇ ପ୍ରସ୍ଥାନ )

---

# ୩ୟ ଦୃଶ୍ୟ

## ମେସ୍ ଗୃହ

( ଯଦୁ ଓ କାର୍ତ୍ତିକଙ୍କର ପ୍ରବେଶ )

କାର୍ତ୍ତିକ—ଶିଖରକୁ ଦେଖିଥିଲୁ କି ? ଶିଖର ଆସିଥିଲା ?

ଯଦୁ—ନାହିଁ ତ, ଶିଖର ବାହା ହେଲା ଦିନୁ ଆଉ ଏଠିକି ସେତେ ଆସୁ-
ନାହିଁ । କଦବା କେମିତ ଆସେ । ମୁଁ କେତେ ଥର ଯାଇ
ଖୋଜିଛି, ତାକୁ ପାଇ ନାହିଁ ।

କାର୍ତ୍ତିକ—ଆଉ ତେବେ ଗଲା କୁଆଡ଼େ ? ତା ବାପା ମଣିଷ ଉପରେ
ମଣିଷ ପଠେଇ ଖୋଜଉଛି, ସେ ମିଳିବାକୁ ନାହିଁ ।

ଯଦୁ—ତା ବାପା ତ ତାକୁ ବାହା କରିଦେଇ ତା ମୁଣ୍ଡ ଖାଇ ଦେଲା ।

କାର୍ତ୍ତିକ—ପୁରୁଣାକାଳିଆ ମଣିଷ, ଦେଖିଲା ମିଳୁଛି ଗୋଟାଏ ଜମିଦାରିଆ
ଘର, ତାର ଫେର ପୁଅ ନାହିଁ । ଝିଅ ଗୋଟିଏ, ପୁଲାଏ
ମିଳିଯିବ, ପଛକୁ ଜମିଦାରୀଟା ବ ଆସିପାରେ । ଲୋଭ ସମ୍ଭାଳି
ପାରିଲା ନାହିଁ ; ଭଲକରି ବୁଝିଲା ବି ନାହିଁ । ଏଇକ୍ଷଣି ମୁଣ୍ଡରେ
ହାତଦେଇ ବାପ ମା ଦୁହେଁ କାନ୍ଦୁଛନ୍ତି । ପୁଅକୁ ଆଉ ଗୋଟାଏ
ବାହା କରିବାକୁ ବସିଛନ୍ତି ।

ଯଦୁ—ଭଲ, ଭଲ ।

କାର୍ତ୍ତିକ—ଭଲ ଯେ, ପୁଅ ଏବେ ଗଲା କୁଆଡ଼େ ? କଟକ ସହରର ତମାମ
ଖୋଜି ଖୋଜି ଥକିଲେଣି, ପାଉ ନାହାନ୍ତି ।

ଯଦୁ—ପାଉ ନାହାନ୍ତି !

—ନିରୁପମା—

କାର୍ତ୍ତିକ—ନା ।

ଯଦୁ—କୁଆଡ଼େ ଗଲା ! ସେ ତ ଏକରକମ ପାଗଳ ହୋଇଯାଇଛି । ଶିଖିଥିଲା କୁଷ୍ଠ-ଚିକିତ୍ସା । କହୁଥିଲା କୋଉଠି ବସି କୁଷ୍ଠସେବା କରିବ; ଆଉ କୁଟୀରଶିଳ୍ପ କରିବ ।

କାର୍ତ୍ତିକ—ହଁ, ମୁଁ ଜାଣେ । ସେଇଥିରେ ସେ ମାତିଥିଲା ।

ଯଦୁ—ମୁଁ ତାକୁ କେତେ ବୁଝେଇଛି ଯେ ସେଗୁଡ଼ାକ ପାଗଳାମି । ସେଥିରେ ମାତ ନା ।

କାର୍ତ୍ତିକ—କାହିଁକି ?

ଯଦୁ—ଆରେ, କୁଷ୍ଠରୋଗ କଣ ସହଜରେ କାହାର ଭଲ ହେଲାଣି ନା ଭଲ ହେବ ? ଆଉ କୁଟୀରଶିଳ୍ପ—ଆଜିକାଲି କଳ-କାରଖାନାର ଯୁଗ । ଏ ଯୁଗରେ ସମସ୍ତେ ଚାହାନ୍ତି ଚକଚକିଆ ଚିକ୍‌କଣଗୁଜଣ ପଦାର୍ଥ । କୁଟୀରଶିଳ୍ପରେ କେଇଟା ଚକଚକିଆ ଜିନିଷ କିଏ କଲାଣି ! କଲେ ବି କେଇଟା କରିବ, କଳ ଆଗରେ ସେ ଟେକିବ କୋଉଠି ?

କାର୍ତ୍ତିକ—ବେଶ୍ ତ, ଏଇଥିପାଇଁ ତୁ ଫେର କହୁ ଗାଁର ଉନ୍ନତି । ଗାଁ ଗାଁ ରେ ବିଦେଶରୁ କଳ ଆଣି ଭର୍ତ୍ତି କଲେ ତୋ ମତରେ ଗାଁର ଉନ୍ନତି ହେବ । ଏକା ଚାଉଳ କଳ ଆସି ଗାଁର କେତେ ରାଣ୍ଡୀଖଣ୍ଡୀଙ୍କୁ ଧାନ କୁଟା ଛଡ଼େଇ ସାରିଲାଣି । ଢେଙ୍କି ସବୁ ଚୁଲି ଜାଳ ହେଲାଣି । ଫଳରେ କଳକୁଟା ଚାଉଳ ଖାଇ ଖାଇ କାହାର ପେଟ ରୋଗ, କାହାର ମୁଣ୍ଡ ରୋଗ, ରୋଗ ଉପରେ ରୋଗ ମାଡ଼ିଗଲାଣି । ତେବେ ବି ତୁ କହୁଛୁ କଳ କାରଖାନା ହଉ; କୁଟୀରଶିଳ୍ପ ବୁଡ଼ିଯାଉ ।

—ନିରୁପମା—

ଯଦୁ—ମୁଁ କଣ ଧାନ କୁଟିବାକୁ ମନା କରୁଛି ?

କାର୍ତ୍ତିକ—ତୁ କଣ ମନା କରିବୁ ମ ? ଧାନ ଆଗେ ଗାଁରେ ରହୁଥିଲେ ତ ? କଳବାଲା କଳ କିଣିଲେ, ପୁଳା ପୁଳା ଟଙ୍କା ବିଦେଶକୁ ଦେଲେ । ତାକୁ ତ ଫେର ଉଠେଇବେ ? ଗାଁକୁ ଗାଁ ବେପାରୀ ପଠେଇ ଧାନଯାକ ସବୁ ଗୁଡ଼ି ଆଣିଲେ । ଗାଁରେ ଧାନ ରହିଲେ ତ କିଏ ରାଣ୍ଡୀ ଝିଅମାନଙ୍କୁ ଦେଇ ଧାନ କୁଟେଇବ ?

ଯଦୁ—ହଁ, ତା ହଉଚି ।

କାର୍ତ୍ତିକ—ଖାଲି ସେତିକି ? ଗାଈ ଖାଇବା କୁଣ୍ଡା ମୁଠିକ ଗଲା; ତୁଷ ଗଣ୍ଡାକ ଜାଳ ହୁଅନ୍ତା, ଝାଡ଼ି ହୁଅନ୍ତା, ସେତିକ ବି ଗଲା । ମୂଲିଆ-ଯାକ କଳରେ ବେଶୀ ମଜୁରି ପାଇ କଳକୁ ଧାଇଁଲେ; ବିଲ ପଡ଼ିଆ ହେଲା, ଗାଁ ଉଠିବ କୁଆଡ଼ୁ ? ତୋର ତ ବେଶ୍ ବୁଦ୍ଧି ! ଏଣେ କହିବୁ ଗାଁର ଉନ୍ନତି ହଉ, ତେଣେ ଶିଖର କୁଟୀରଶିଳ୍ପ କଥା କହିଲା ବୋଲି ତାକୁ ଗାଳି ଦବୁ !

ଯଦୁ—ନାହିଁ, ଗାଳି ଦଉ ନାହିଁ ଯେ, ବର୍ତ୍ତମାନ ଲୋକଙ୍କ ମନ୍ଦ ଗତିକୁ ଚାହିଁ ମୁଁ କହୁଛି ।

କାର୍ତ୍ତିକ—ହଁ, ମୁଁ ବୁଝିଲି ଯେ, ତୁ କହିବୁ ଗାଁଲୋକେ ଖୋଟ ଚାଷ କରନ୍ତୁ । ଯୋଟଯାକ କଳକୁ ଦିଅନ୍ତୁ, କେହି ଆଉ ବାଣି କେହିଏ ନ କାଟନ୍ତୁ । ପଦା ଖଣ୍ଡିଏ ଲୋଡ଼ା ହେଲେ ସେହି କଳବାଲା ଦୋକାନ୍ରୁ କିଣି ପିନ୍ଧା କରନ୍ତୁ । ଟଙ୍କାକରେ ବିକି ତିନିଟଙ୍କା ଦେଇ ଚକଚକିଆ ମାଲ କିଣନ୍ତୁ ।

— କ୍ରମଶଃ —

ଯଦୁ—ନାଇଁ, ନାଇଁ, ତା କାହିଁକି ହବ । ତେବେ କେତେଗୁଡ଼ାଏ ଜିନିଷ ଯାହା ନିହାତି ଦରକାର, ତାକୁ ସବୁ ହାତେ ହାତେ କରିବା ଭଲ ।

କାର୍ତ୍ତିକ—ହାତେ ହାତେ କରିବ ଆଉ କିଏ ? କରିବେ ବା କେମିତି ? କାହା ପାଇଁ ବା କରିବେ ? ଆମେ ସମସ୍ତେ ଖୋଜିବା ଚକ-ଚକିଆ ଜିନିଷ, ହାତରେ କିଛି କରିବା ନାହିଁ । ଯେ ହାତରେ କାମ କରିବେ ତାଙ୍କୁ ଘୃଣା କରିବା । କ୍ରମେ ସମସ୍ତଙ୍କ ହାତ ବନ୍ଦ ହୋଇଯିବ, ଅଭ୍ୟାସ ଛୁଟିଯିବ । ହାତ ହଲେଇଲେ ହାତରେ ବାତ ପଡ଼ିବ । ଶେଷ ଫଳ କଅଣ ହେବ ସେତିକି ଟିକିଏ ଭାବ ।

ଯଦୁ—ତୁ ଯାହା କହିଲୁ ସତ । ଶିଖର ଠିକ୍ କହୁଛି, ଶିଖର ପାଗଳ ନୁହେଁ, ଆମେ ସବୁ ପାଗଳ ।

କାର୍ତ୍ତିକ—ସେ ଏବେ ଗଲା କୁଆଡ଼େ । ତାଙ୍କ ମଣିଷ ଖୋଜି ଖୋଜି ଥକିଲଣି । ସେ ବା କୋଉଠି ତାକୁ ପାଇବ ! ଚାଲ ଟିକିଏ ତାକୁ ଖୋଜିବା ।

ଯଦୁ—ହଉ ଚାଲ ।

( ଉଭୟଙ୍କର ପ୍ରସ୍ଥାନ )

---

## ୪ଥ ଦୃଶ୍ୟ

### ଗୁମାସ୍ତା ଶଙ୍କର୍ଷଣଙ୍କ ଗୃହ, ନନ୍ଦାର ପ୍ରବେଶ

ନନ୍ଦା—ଗୁମାସ୍ତା ବାବୁ ! ଗୁମାସ୍ତା ବାବୁ ! କଅଣ ଆସି ଏତେବେଳ ହେଲାଣି ଘରୁ ବାହାର ନାହାନ୍ତି । (ଶଙ୍କର୍ଷଣଙ୍କର ପ୍ରବେଶ)

ଶଙ୍କ—କରେ ନନ୍ଦା ! ତୁ କୁଆଡେ ଆଇଲୁ ? ମୁଁ ତ ଯାଉଥିଲି ତୁ କାହିଁକି ଆଇଲୁ ? ମୁଁ କଣ ଯାଇ ନ ଥାନ୍ତି କି ?

ନନ୍ଦା—ହଁ ଯାଇଥାନ୍ତେ ଯେ—ସାଆନ୍ତେ ଘରୁ ଉଛୁନ୍ନ କଲେ ଗୁମାସ୍ତା ଆଇଲେଣି, ଗୁମାସ୍ତା ଆଇଲେଣି; କେଜାଣି ସାଠ ଥର ପଗ୍ଗୃର ସାରଲେଣି ।

ଶଙ୍କ—ତୁ ତେବେ ଯା ଯା ଆଗେରେ । କହିଦବୁ ମୁଁ ଯାଉଛୁ ।

ନନ୍ଦା—ହଁ ଯିବି, ଟିକଏ ଦମ୍ ମାରେଁ ।

ଶଙ୍କ—ଆରେ ! ସାଆନ୍ତ ବ୍ୟସ୍ତ ହେଉଥିବେ । ଫେର ଗାଳି ଖାଇବୁ ।

ନନ୍ଦା—ହିଁ ଆଜ୍ଞା, ଗାଳି ତ ସବୁବେଳେ ଖାଉଛୁ । ଗାଳିରେ କଅଣ ପେଟ ପୂରୁଛି ! କହିଦେବି ନାହିଁ ଗୁମାସ୍ତା ବାବୁ ପୋଖରପାଣି ଯାଇଥିଲେ ।

ଶଙ୍କ—ତୁ ତ ଗୋଟାଏ ପକା ତାଲିମ ଗୃକର ।

ନନ୍ଦା—ତାଲିମ ଆଜ୍ଞା ଆପଣଙ୍କ ପାଖରୁ ନା ?

ଶଙ୍କ—ତତେ କଣ କିଏ କଥାରେ ପାରବ !

ନନ୍ଦା—ନାହିଁ ଆଜ୍ଞା, ଆପଣଙ୍କ ପାଖରେ ମୁଁ ଗୋଟାଏ କେତେକର ? ଆପଣ ମୋତେ କହନ୍ତୁ ତ, ଆପଣଙ୍କ ଘର ଦୁଆର କାହିଁକି ଏଯାଏ ଲିପାପୋଛା ହୋଇ ନାହିଁ ? କାନ୍ଥରେ ଚିତା ପଡ଼ି ନାହିଁ ? ପୁଅ ବାହାଘର କାଲି ଛାଡ଼ି ପରଦିନ । ଏସବୁ ହବ କେଉଁ ଦିନ ?

— ନନ୍ଦୁପମା —

ଶଙ୍କ—(ହସି ହସି) ଆରେ କାହା ପୁଅ ବାହାଘର ମ ?

ନନ୍ଦା—ଆପଣଙ୍କ ପୁଅ ବାହାଘର !

ଶଙ୍କ—ତୁ ତେବେ କଣ୍ଟ ବୁଝୁନଉଁ—ହଉ ହଉ, ଯାହା ବୁଝିଛୁ ସେଇଆ । ଆମର ଲୁପାପୋଷ୍ଟ ଦରକାର ନାହିଁ, କ ଚଡ଼ା ପଢ଼ିବା ଦରକାର ନାହିଁ । ଖାଲି ସବୁ ସେମିତ ହୋଇଯିବ ।

ନନ୍ଦା—ଅଜ୍ଞା ମୁଁ ବୁଝିନାହିଁ ? ସବୁ ବୁଝିଛୁ । ସାଆନ୍ତେ ଆମର ଡାଳେ-ଡାଳେ ଗଲେ, ନନ୍ଦା ପତ୍ରରେ ପତ୍ରରେ ଯାଏ । ଆପଣଙ୍କ ତାଲିମ ସବୁ !

ଶଙ୍କ—କିରେ ଆମ ତାଲିମ କଣ ?

ନନ୍ଦା—ଅଜ୍ଞା ସବୁ ଆପଣଙ୍କ ତାଲିମ । ସାଆନ୍ତେ ଆମର ଭାର ଗଣ୍ଠିଆ ହେଲେ କଣ ହେବ, ଆପଣଙ୍କ ହାତ ମୁଠାରେ । ହାକିମ ଯେତେ ଆଇନ ବାଜ ହେଲେ ବ ଫେସକାର ମୁଠାରେ ଚୁହି ।

ଶଙ୍କ—ଯା ଯା, ତୁ ଗୋଟାଏ ଭାରି ବଗୁଲିଆ ।

ନନ୍ଦା—ଆଜ୍ଞା ଦେଖିବେ ନାହିଁ କି, ପୁଅ ବାହାଘର ହବ ଆପଣଙ୍କର । ପଛେ ଫେରେ କହିବେ ନନ୍ଦା ଯାହା କହୁଥିଲା ସେଇଆ । ସାଆନ୍ତଙ୍କ ପୁଅ କଅଣ ସତେ ଆଉ ଗୋଟାଏ ବାହା ହବାକୁ ଅଡ଼ିବେ ଯେ ! ବୁଢ଼ା ଯେତକ ଛାଇଚୁଇଁ ରଖୁଛନ୍ତି—ପୁଅ ସବୁଯାକ ଉଡ଼େଇ ଦେବେ । ମୁଁ ନାଡ଼ୀ ଚପି ସାରଲିଣି ।

ଶଙ୍କ—ମୁଁ ଆସୁଛି, ଶୀଘ୍ର ଯିବା । ସାଆନ୍ତେ ବ୍ୟସ୍ତ ହେଉଥିବେ ।

ନନ୍ଦା—ହଉ ଆପଣ ପୋଖରୀପାଣି ବସି ଆସନ୍ତୁ, ଯିବା । ମୁଁ ଟିକିଏ ଦମ୍ ମାରେ । (ଶଙ୍କର୍ଷଣଙ୍କର ପ୍ରସ୍ଥାନ) ଯା ଯା, ତମର କପାଳକୁ ପଣସ ପାଚଲାଣି, ଖାଇବ । ମିଠାଯାକ ତମର; ମିଠାଯାକ, ଆଉ ଅଠାଯାକ ଆମ ସାଆନ୍ତଙ୍କର । ଖାଅ ଖାଅ, ମୋ ବାପ ମାଆ ମୋ

ନାଁଟି ରଖିଥିଲେ ନନ୍ଦା; ଏ ସମସ୍ତେ ମତେ କହନ୍ତି ଅନ୍ଧା । ମୁଁ ଯାହା କହେଁ ସମସ୍ତଙ୍କୁ ଗନ୍ଧାଏ । ଗନ୍ଧଭ ପଚ୍ଛକେ, ମୁଁ କାହିଁକି ଅନ୍ଧା ହେବି ? ନନ୍ଦା କେବେ ଅନ୍ଧା ନୁହେଁ ।

ଗୀତ

[ଶଙ୍କରାଭରଣ—ଝୁଲା]

ନନ୍ଦା କଥାଟି ବନ୍ଧା
ନନ୍ଦା ନୁହଇ ଅନ୍ଧା ।
ଛନ୍ଦାଛନ୍ଦ ପାଠ                    ନନ୍ଦା ନ ଜାଣଇ
ନନ୍ଦା ଜାଣେ ନିଜ ଫନ୍ଦା
ନନ୍ଦା ବୁଝେ ନିଜ ଧନ୍ଦା ।
[ନନ୍ଦା]    ଯାଆନ୍ତୁଙ୍କ ଘରେ ବନ୍ଧା
[ନନ୍ଦା]    ମୁଣ୍ଡରେ ହେଲାଣି ଚନ୍ଦା,
ଯାଆନ୍ତେ ସମ୍ବାଦ                    ଗୁଡ଼ ରଖିଥାନ୍ତି
ଗୁଡ଼ପାକ ଖାଏ ନନ୍ଦା
[ନନ୍ଦା]    ଦେଖୁଥାଏ, ନହେ ଅନ୍ଧା ।
ଓଲଆ ଗାଈକ ଛନ୍ଦା
କାଠ ମାଟିବାକୁ ରନ୍ଦା,
ନିଜ କଥା ପଦ                    ସମସ୍ତଙ୍କୁ ଗନ୍ଧା
ଦୁନିଆ ଗୋଲକଧନ୍ଦା ।
[କିମ୍ପା]    ନନ୍ଦାକୁ କହିବ ଅନ୍ଧା ?
ତୋ ଘରେ ଲଗିବ ଖନ୍ଦା
ଯାକର ମହୁର ରନ୍ଧା,

—ନିରୁପମା—

ଆନନ୍ଦ ଉତ୍ସବ ମୋ ଘରେ ତୋ ଘରୁ

ଉଛୁଳି ଉଠିବ କନ୍ଦା ।

[କନ୍ଦା] ଅ‌ାଖିବୁଜି ଗିନା ଅନ୍ଧା

[କନ୍ଦା] ସତେ ସତେ ନୁହେଁ ଅନ୍ଧା ।

(ଶଙ୍କର୍ଷଣଙ୍କର ପ୍ରବେଶ)

କନ୍ଦା—ଆଇଲେଣି ! ଗୃଲନ୍ତୁ ଗୃଲନ୍ତୁ । ସାଆନ୍ତ ବ୍ୟସ୍ତ ହେଉଥିବେ ।

(ଉଭୟଙ୍କର ପ୍ରସ୍ଥାନ )

——————

—ଯବନିକା—

## ପଞ୍ଚମ ଦ ଶ୍ୟ

### ମଙ୍ଗରାଜଙ୍କ ଚଉପାଢ଼ୀ

(ଶଙ୍କର୍ଷଣ ଓ ପଦ୍ମନାଭଙ୍କର ପ୍ରବେଶ)

ପଦ୍ମ—କାହିଁ, କଟକ ସହର ତମାମ ତ ଖୋଜି ଖୋଜି ଆସିଲି। ଶିଖରକୁ ତ କୋଉଠି ପାଇଲି ନାହିଁ।

ଶଙ୍କ—ସାଆନ୍ତ ଶୁଣିଲେ ତ ଅଧୀର ହୋଇ ପଡ଼ିବେ।

(ମଙ୍ଗରାଜଙ୍କର ପ୍ରବେଶ)

ମଙ୍ଗ—ପଦ୍ମନାଭ ! କଣ ଖବର ? ଶିଖର ଆସିଲା ନାହିଁ ?

ପଦ୍ମ—କାହିଁ ? ଖୋଜି ଖୋଜି ତ ଥକିଲି, ତାକୁ ତ କୋଉଠି ପାଇଲି ନାହିଁ।

ମଙ୍ଗ—ପାଇଲ ନାହିଁ ?

ପଦ୍ମ—ନାହିଁ, ଯେଉଁ ଯେଉଁ ଜାଗାକୁ ତାର ଯିବାଆସିବା ମୁଁ ତ ଜାଣେ। ସେସବୁ ଜାଗାକୁ ଗଲି; କେହି କିଛି କହି ପାରିଲେ ନାହିଁ। କିଏ କହିଲା ୧୫ ଦିନ ହେଲା ତାକୁ ଦେଖି ନାହିଁ; କିଏ କହିଲା ମାସେ ହେଲା ତା ଖବର କିଛି ଜାଣି ନାହିଁ—ଏହିପରି ସବୁ କହିଲେ।

ମଙ୍ଗ—ଆଁ ! ଆଁ ! ତେବେ ଗଲା କୁଆଡ଼େ ? ତା ମା ଶୁଣିଲେ ତ ମୁଣ୍ଡ ବାଡେଇ ଦେବ। ତାକୁ ସମ୍ଭାଳିବ କିଏ ? ବାହାଘର ପରଠାରୁ ତା ମନ ଖରାପ ଥିଲା। ସେଇଥିଲାଗି ଆଉ ଗୋଟିଏ ବାହା କରିବା ପାଇଁ ଏତେ ଯୋଗାଡ଼ କରିଥିଲି। କାଲି ବାହାଘର; ଏତେବେଳେ ସେ ଏପରି କଲା ! ଏ କଥା ଜାଣିଥିଲେ କାହିଁକି ବାହାଘରର ଆୟୋଜନ କରିଥାନ୍ତି !

ଶଙ୍କ—ଆଜ୍ଞା, କାଲି ସକାଳୁ ବରଧରା ଆସି ପହଞ୍ଚିବ। କଣ କରାଯିବ ?

ପଦ୍ମ—ଶିଖରର ଜଣେ ସାଙ୍ଗ କହିଲେ, ବାହାଘର କାଲି ବୋଲି ଶିଖର ଜାଣିଛି । ସେ ଆହୁରି କହିଲେ—ଶିଖରର ଇଚ୍ଛା ବିରୁଦ୍ଧରେ ମହାରାଜ କାହିଁକି ତାକୁ ପୁନରାୟ ବାହାହେବାକୁ ବାଧ କରୁଛନ୍ତି ? ସେଇଥି ପାଇଁ ତା ମୁଣ୍ଡ ବିଗିଡ଼ି ଯାଇଛି ।

ମହା—ତେବେ ସେ କଣ ରାଜି ନ ଥିଲା ? ଏ କଥା ତେବେ କହିଲା ନାହିଁ କାହିଁକି ? ସେ ଏବେ ଗଲା କୁଆଡ଼େ ? ପଦ୍ମନାଭ ! ଗଲା କୁଆଡ଼େ ଶିଖର ? ଆଉ ଥରେ ଯାଇ ଖୋଜ ପଦ୍ମନାଭ ! ମୋ ଶିଖର ଗଲା କୁଆଡ଼େ !

ପଦ୍ମ—ସେ ତ ଆହୁରି କହିଲେ, ଶିଖର କୁଆଡ଼େ କହୁଥିଲା ଯେ ବାହାଘର ବେଳକୁ ସେ ନ ଥିବ । ତେତେବେଳକୁ ତାକୁ କେହି କୋଉଠି ଦେଖିପାରିବେ ନାହିଁ । ତାର ଏ କଥାଟାକୁ ସେ ଥଟ୍ଟା ମଣିଥିଲେ ।

ମହା—ଆଁ ! ଆଁ ! ନ ଥିବ ! ନ ଥିବ ! କଣ କହୁଛ, ନ ଥିବ ! ତେବେ କଣ ଶିଖର ମୋର ପ୍ରାଣ ହରାଇଦେଲା ! ମୋହରି ଦୋଷରେ ମୋ ପୁଅକୁ ମୁଁ ହରାଇ ବସିଲି ! କି ବୁଦ୍ଧି କଲି ମୁଁ ? ହେ ଭଗବାନ ! ମୋ କପାଳରେ ଏଇଆ ଥିଲା !

ପଦ୍ମ—ଆପଣ ଧୈର୍ଯ୍ୟ ଧରନ୍ତୁ । ଆପଣ ଅଧୀର ହେଲେ ଫେର ଚଳିବ କପରି ? ଶିଖର ବୋଧହୁଏ କଟକରୁ ଅନ୍ୟ କୌଣସିଠାକୁ ଚାଲି-ଯାଇଛି । ମୁଁ ଭଲକରି ଖୋଜି ସାରି ନାହିଁ । କାଲି ବାହାଘର ଯୋଗୁଁ ସମସ୍ତେ ବ୍ୟସ୍ତ ହୋଇ ରହିଥିବେ ବୋଲି ମୁଁ ଖବର ଦେବାକୁ ଚାଲିଆସିଲି । ଆପଣ ଧୈର୍ଯ୍ୟ ଧରନ୍ତୁ । ଶିଖରକୁ ଯେପରି ହେଉ ମୁଁ ଖୋଜି ବାହାର କରିବି । ସେ ଅଛି, କୋଉଠି ଲୁଚିଛି ।

ମହା—ପଦ୍ମନାଭ ! ପଦ୍ମନାଭ ! ମୋ ପୁଅକୁ ଆଣିଦିଅ । ସେ ବାହା ନ ହେଉ । ତା ମନ ଯାହା ହଉଛି ସେ ତା କରୁ । ତା ମା' କେମିତି

ସମ୍ଭାଳି ହବ ! ତାକୁ କିଏ ସମ୍ଭାଳିବ ! ଏଇ ହେଲଣି ଘୋର ଚିନ୍ତା ।

ପଦ୍ମ—ଆପଣ ଧୈର୍ଯ୍ୟ ଧରନ୍ତୁ । ତା ମା'କୁ ମୁଁ ବୁଝେଇ ଦଉଛି । କହିବି ଶିଖର ଏଠାରେ ବାହା ହବାକୁ ରାଜି ନୁହେଁ । ସେ ସେଇଥିପାଇଁ ଆସିଲା ନାହିଁ । ଏ କନ୍ୟାଟି ସ୍ଥିର ହେଇଚି ଗୁମାସ୍ତାଙ୍କ ପୁଅ ନାଁରେ । ଗୁମାସ୍ତାଙ୍କର ପୁଅର ବାହାଘର କାଲି ହୋଇଯାଉ । ଶିଖର ତା ନିଜ ମନ ମୁତାବକ କନ୍ୟା ସ୍ଥିର କରିବ, ବାହାହବ ।

ଶଙ୍କ—ପଦ୍ମନାଭ ! ତେମେ ଯେମିତି ପାରୁଛ ତା ମା'କୁ ବୋଧ କର । ତୁମେ ଯାଅ, ତୁମେ ଶୀଘ୍ର କଟକ ବାହାରିଯାଅ । ଆଗେ ଶିଖରକୁ ଖୋଜ । ମୋ ଶିଖରକୁ ଖୋଜି ଆଣି ମତେ ଦିଅ । ଗୁମାସ୍ତା ! ତୁମେ ତୁମ ପୁଅକୁ ନେଇ କାଲି ବାହାକରି ଆଣ ।

ଶଙ୍କ—ଅଜ୍ଞା ! ଆଜ୍ଞା !

ମଙ୍ଗ—ଆଉ ଅଜ୍ଞା ଆଜ୍ଞା କଣ ଶୁଣିବି । ମତେ ଆଉ କିଛି କହ ନା । ଶୀଘ୍ର ତମ ପୁଅର ବାହାଘର କାମ କାଲି ସାରିଦିଅ । ସବୁ ଆମ ଖର୍ଚ୍ଚରେ ହେବ । ଯାହା ଲୋଡା ସବୁ ଆମଘରୁ ନେଇଯାଅ । ମୋତେ ଆଉ କିଛି କହନା । ଆଉ ମୋ କାନକୁ କିଛି ଶୁଭୁ ନାହିଁ । ମୋ ମୁଣ୍ଡ କଣ ହୋଇଯାଉଛି ! ଅନ୍ଧାର ଦିଶୁଛି । ମତେ ଧର, ଧର ମତେ ଧର ।

( ପଦ୍ମନାଭ ଓ ଶଙ୍କର୍ଷଣ ମଙ୍ଗରାଜଙ୍କୁ ଧରି ପ୍ରସ୍ଥାନ )

—o—

—ନିରୁପମା—

# ୬ଷ୍ଠ ଦୃଶ୍ୟ

## ମଣିସ୍ୱାଇଁଙ୍କ ଉଦ୍ୟାନ

( ମଣିସ୍ୱାଇଁ ଓ ଦଇତାରି )

ଦଇତାରି—ମଣିଆ ଭାଇ, ମୁଁ କାଲି ତମ ଘରକୁ ଆସି ଫେରି ଯାଇଥିଲି । ଆଜି ଫେରି ଆସିଛି ।

ମଣି—କରେ କାହିଁକି ? ମୁଁ ଖଣ୍ଡେ ଲୁଗା କଣିବାକୁ ଯାଇଥିଲି କାଲି, ପାଇଲି ନାହିଁ ।

ଦଇତାରି—ଲୁଗା ପାଇଲୁ ନାହିଁ ?

ମଣି—ଆରେ ସବୁ ତ କଳାବଜାର, ଅମୂଲ ମୂଲ କହୁଛନ୍ତି । ଯେ କଳା-ବଜାରରେ ପୁଳା ପୁଳା ଉଠେଇଛନ୍ତି, ତାଙ୍କ ଛଡ଼ା ଆଉ କିଏ ହାତ ଦେଇପାରିବ ? ଛାଡ଼ ସେ କଥା, କୁଆଡ଼େ ଆଇଚୁ କହ ।

ଦଇତାରି—କୁଆଡେ କିଏ ସାଧୁ ଆସିଛନ୍ତି, ତୁ ନଥି ଯିବାଆସିବା କରୁଛୁ । ତୋର କଣ ବେମାର ହୋଇଥିଲି, କୁଆଡ଼େ ଭଲ ହୋଇ-ଗଲଣି । ମୁଁ ଟିକିଏ ଯାଇଆନ୍ତି ।

ମଣି—ଅରେ, ସେ ସେମିତିକା ସାଧୁ ନୁହନ୍ତି ମ ! ସେ ଆମରି ଏଇ ମଣିଷ । କାଲି ଛଉ, କୁଷ୍ଠରୋଗ ଯେ ଭଲ ନ ହେବା କଥା ସେହିପରି ରୋଗ ସବୁ ଭଲ କରୁଛନ୍ତି । କେତେ ଲୋକ ଭଲ ହେଲେଣି । ମୋର କାନ ଫୁଲିଥିଲା, ନାକ ଫଲି ଥିଲା; ଦେହରେ ଛଉ କେତେ ଖଣ୍ଡ ଦାହାଣଥିଲା । ହେଇ ଦେଖ ବାରପଣ ଗଲାଣି । ତୋର ଛଉ କେତେ କେତେ ବାନର ହେଲାଣି ?

ଦଇତାରି—ମୁଁ ତ ଆଗେ ଜାଣିପାରୁ ନ ଥିଲି; ତେବେ ଜାଣିଲିଣି ଗୃର ପାଞ୍ଚ ମାସ ହେବ । ଦୁଇ ତିନ ଖଣ୍ଡ ଛଉ ହୋଇଛି ।

—ନିରୁପମା—

ମଣି—ଶୀଘ୍ର ଶୀଘ୍ର ଭଲ ହୋଇଯିବୁ !

ଦଇତାରି—ଏଠିକି ସେ କେତେ ଦୂର ?

ମଣି—ବାଟ ଦୁଇ କୋଶ ହେବ । ମୁଁ ତ ନିତ ଯାଉଛୁ ନିତ ଆସୁଛୁ । ହେଇ ବାହାରିଲଣି, ଏଇକ୍ଷଣି ଯିବୁ ।

ଦଇତାରି—ତେବେ ଭଲ ହେଉଛନ୍ତି ସବୁ ?

ମଣି – ହେଇ ଦେଖୁନ୍ତୁ ତ ମୋତେ । ଅଳ୍ପଦିନର ଛଉ ହେଲେ ଶୀଘ୍ର ଭଲ ହୋଇଯାଉଛି । ଅଧିକ ଦିନର ହେଲେ ଭଲ ହବାକୁ କିଛି ବେଶି ଦିନ ଲଗୁଛି । କାହାକୁ ମାସେ, କାହାକୁ ତିନିମାସ, କାହାକୁ ବରଷେ ଲାଗିବ । ସେମାନେ ଦେଖିଲେ କହିଦେବେ ।

ଦଇତାରି—ଯେ ଯାହା ଘରେ ରହି ଚିକିତ୍ସା ହୋଇପାରିବ ତ ?

ମଣି—କାହିଁକି ନ ହବ, ମୁଁ ତ ଘରେ ରହୁଛି । ଏଡ଼ି ବଗିଚା ଭିତରି ଖଣ୍ଡିକରେ ଘରରେ ରହେ । କିନ୍ତୁ ଦିନଯାକ ସେଇଠି କଟାଇବାକୁ ପଡୁଛି । କାମ କରିବାକୁ ସେ ଦଉଛନ୍ତି । କାମରେ ଲାଗିଲେ କିଛି ଜଣା ପଡୁ ନାହିଁ । ଯେ ଘରେ ରହିବ ତାକୁ କହି ଦଉଛନ୍ତି, କିପରି ନିୟମରେ ସେ ଘରେ ରହି ଚଳିବ । ଅଲଗା କରି ଗୋଟିଏ ଘରେ ଏକା କାରବାର ହବ । ତାର ଲୁଗାପଟା, ବିଛଣାପତର ସବୁ ଅଲଗା କରି ରଖିବ । ଆଉ କାହାର ଲୁଗାପଟା କି ବିଛଣା ଆଦି ସେ ବ୍ୟବହାର କରିବ ନାହିଁ; ତା ବାସନକୁସନ ବି ସବୁ ଅଲଗା । ସେ ନିଷ୍ଠାରେ ଚଳିବ । ଏଥିରେ କିଛି ଅସୁବିଧା ନାହିଁ, ମୁଁ ତ ବେଶ ଚଳୁଛି ।

ଦଇତାରି – ହଉ ତେବେ, ମୁଁ କାଲି ସକାଳୁ ଆସିବି; ତୋ ସାଙ୍ଗରେ ଯିବି ।

( ଉଭୟଙ୍କର ପ୍ରସ୍ଥାନ )

---

—ଯବନିକା—

## ୭ମ ଦୃଶ୍ୟ

### ରାଜପଥ

(କୁନ୍ଦନବାରଣୀ ଫଘର ଦୁଇ ଜଣ ପ୍ରଗ୍ରହ ଢୋଳନୀ
ବଜାଇ ବଜାଇ ପ୍ରବେଶ)

ଗୀତ

(ରାଗ ରସକୁଲ୍ୟା ବାଣୀ)

ବଡ଼ ରୋଗଟି ଯେ ବଡ଼ ବଗଡ଼
ତାକୁ ଘୋଡ଼ାଇଲେ ହୁଅଇ ବଡ଼
ବଢ଼ି ବଢ଼ି ହାତ ଗୋଡ଼ ଛୁଡ଼ାଇ
ମଣିଷପଣରୁ ଦିଏ ବୁଡ଼ାଇ ଯେ
ମହାରୋଗ ତାକୁ ଜାଣ ଯେ,
ଦେଖାଦେଲା କ୍ଷଣି ମୂଳୁଁ ନ ମାଇଲେ
ବ୍ୟାକୁଳ କରଇ ପ୍ରାଣ ଯେ । ୧ ।

ଖୁଦର ଛଉ ଆକାରରେ ଆଗେ
ଦେଖା ଦିଅଇ ସେ ଲୋକଙ୍କ ଅଙ୍ଗେ
ଜଳା ପୋଡ଼ା ଗଲୁ କିଛି ନ ଥାଇ
ଲୁଚି ଲୁଚି ଭିତରକୁ ମାଡଇ ସେ
ବଳିଗଲେ ରୋଗ ଦାଉ ସେ;
ଆଉ କେ ହଟାଇ ପାରିବ କି ତାକୁ
ଘୋଟିଯାଏ ଟାଉ ଟାଉ ଯେ । ୨ ।

—ନିରୁପମା—

ଏ ରୋଗ ପସରା ଦେଲେ ମେଲାଇ
ଆପଣା ଜୀବାଣୁ ଦିଏ ଖେଳାଇ
ଜଣ ଜଣକର ବୁଦ୍ଧି ଦୋଷରେ
ପ୍ରାଣ ପଣ ଯାଉ ହେବେ ଶେଷରେ ସେ
ମୂର୍ତ୍ତି ମାର ଦେଲେ ଯିବ ଯେ
ହେଲା କର କିପାଁ          ବେଳାରେ ପଛକୁ
ଅକାରଣ ଭାଳୁଥିବ ଯେ । ୩ ।

(ପଟକ୍ଷେପ)

---

—ନବୁପମା—

# ୪ର୍ଥ ଅଧ୍ୟାୟ

## ୧ମ ଦୃଶ୍ୟ

### କର୍ମକୁଟୀରର ପ୍ରାଙ୍ଗଣ

(ନିର୍ମଳ ସେବିକା ଓ ଜଣେ କର୍ମୀ)

ନିର୍ମଳ—ଏଥର ଘଣ୍ଟା ଦିଅ ।

[କର୍ମୀ ଘଣ୍ଟା ବଜାଇବା । ଛାତ୍ରଛାତ୍ରୀମାନଙ୍କର ପ୍ରବେଶ ଓ ଯଥା ସ୍ଥାନରେ ଦଣ୍ଡାୟମାନ ]

ପ୍ରାର୍ଥନା

ପ୍ରଭୁ ହେ ଦିଅ ହେ ସୁମତି ସଦା ଅନ୍ତରେ
ଦିଅ ଦିଅ ପ୍ରଭୁ ଦିଅ ଅନୁରକ୍ତି
ଲାଗି ରହିଥାଉଁ କାମରେ ।

ଶକତି ତୁମରି ଭକତି ତୁମରି
ମୁକତି ତୁମରି କରେ
ଶାନ୍ତ ଅଶାନ୍ତ ପ୍ରୀତି ଅପ୍ରୀତି
ସବୁ ତୁମଠାରୁ ଝରେ ॥

କରୁଣା-ସାଗର କୃପାର ଭଣ୍ଡାର
ତୁମ କୃପା ଜଗତରେ

—ନିରୁପମା—

ଖେଳାଇ ଦେଉଛ ଭୁଲାଇ ରଖିଛ
ସମସ୍ତଙ୍କୁ ଆନନ୍ଦରେ ॥
ଯେ ଖେଳେ ଯେମନ୍ତ ସେ ପାଏ ତେମନ୍ତ
କ ଥାଇଁ ତାହାଁ ଭିତରେ
କ୍ଷୁଦ୍ର ବୁଦ୍ଧି ଜନ ନ ବୁଝୁଁ ସେମାନ
କୃପା ଭିକ୍ଷା ଶ୍ରୀପଦ୍ମରେ ॥

( ସମସ୍ତଙ୍କର ହାତଯୋଡ଼ି ପ୍ରଭୁଙ୍କୁ ନମସ୍କାର)

ନିର୍ମଳ—ଏଥର ଯେ ଯାହାର କାର୍ଯ୍ୟରେ ଯାଇ ଲାଗିଯାଅ।

( ନିର୍ମଳ ସେବକାଙ୍କ ଛଡ଼ା ଅନ୍ୟ ସମସ୍ତଙ୍କର ପ୍ରସ୍ଥାନ
( ଦୁଇ ଜଣ ପରିଦର୍ଶକଙ୍କର ପ୍ରବେଶ )

ନିର୍ମଳ—ନମସ୍କାର ! ( ହାତଯୋଡ଼ି ଅଭିବାଦନ )
ପରିଦର୍ଶକଦ୍ୱୟ—ନମସ୍କାର ! ( ହାତଯୋଡ଼ି ଅଭିବାଦନ )
୧ମ—ପ—ଏହି କର୍ମକୁଟୀର ତ ?
ନିର୍ମଳ—ଆଜ୍ଞା ହଁ ।
୧ମ—ପ—ଏଠାରେ କୁଷ୍ଠ ଚିକିତ୍ସା ହୁଏ, କୁଟୀରଶିଳ୍ପ ମଧ୍ୟ ଶିକ୍ଷା ଦିଆ ଯାଏ, ନା ?
ନିର୍ମଳ—ହଁ କୁଟୀରଶିଳ୍ପ ଶିକ୍ଷା ଦିଆଯାଏ ।
୧ମ—ପ—କୁଷ୍ଠରୋଗର ଚିକିତ୍ସା କେଉଁଠାରେ ହୁଏ, ଶିଳ୍ପଶିକ୍ଷା କେଉଁଠାରେ ହୁଏ ?
ନିର୍ମଳ—ସବୁ ଏହିଠାରେ ହୁଏ, ଶିଳ୍ପକାର୍ଯ୍ୟଟି ମଧ୍ୟ ସେହି ଚିକିତ୍ସା ମଧ୍ୟରେ ?
୧ମ—ପ—କିପରି ?

—ନିରୁପମା—

ନିର୍ମଳ—ରୋଗୀ ଯେତେ ତାହାର ରୋଗର ଚିନ୍ତା ଭୁଲିଯାଇ କୌଣସି ଶାରୀରିକ ପରିଶ୍ରମର କାର୍ଯ୍ୟରେ ଆପଣାକୁ ଲଗାଇ ରଖିପାରିବ, ତେତେ ଶୀଘ୍ର ତାହାର ରୋଗ ଆରୋଗ୍ୟ ହୋଇପାରିବ । ରୋଗ ନୂତନ ଅବସ୍ଥାରେ କୌଣସି କୌଣସି ସ୍ଥଳରେ ବିନା ଔଷଧରେ କେବଳ ସୁନିୟମରେ ଚାଲିବା ଦ୍ୱାରା ମଧ୍ୟ ଆରୋଗ୍ୟ ହେବାର ଦେଖାଯାଏ ।

ନିରୁ—ପ—ଏଠାରେ ଯେଉଁମାନେ ରହନ୍ତି ଓ କାର୍ଯ୍ୟ ଶିକ୍ଷାକରନ୍ତି, ସେମାନେ କଣ ସମସ୍ତେ ରୋଗୀ ?

ନିର୍ମଳ—ନା, ଅନ୍ୟମାନେ ଅଛନ୍ତି । ରୋଗୀ ଅଛନ୍ତି, ରୋଗମୁକ୍ତ ବ୍ୟକ୍ତି ଅଛନ୍ତି । ଏହିମାନଙ୍କ ମଧ୍ୟରୁ କେହି କେହି ରୋଗର ଚିକିତ୍ସକ ମଧ୍ୟ ହୋଇ ସାରିଲେଣି । ଏହି କର୍ମକୁଟୀରର ମୁଖ୍ୟ କର୍ମୀ ଏହିମାନେ ।

ନିରୁ—ପ—ରୋଗୀମାନଙ୍କ ହସ୍ତନିର୍ମିତ ପଦାର୍ଥ ସାଧାରଣ ଲୋକେ କିଣିବାକୁ କୁଣ୍ଠିତ ହେଉନାହାନ୍ତି ତ ?

ନିର୍ମଳ—କୁଣ୍ଠିତ ହେବାର କୌଣସି କାରଣ ନାହିଁ । ଏମାନଙ୍କର ରୋଗ ସଂକ୍ରାମକ ନୁହେଁ ।

ନିରୁ—ପ—ଏଠାରେ କଣ କୌଣସି ସଂକ୍ରାମକ ରୋଗୀର ଚିକିତ୍ସା ହୁଏ ନାହିଁ ?

ନିର୍ମଳ—ହଁ ହୁଏ, ସଂକ୍ରାମକ ରୋଗୀ ମଧ୍ୟ ଅଛନ୍ତି । ରୋଗୀମାନେ ଅନେକେ ନିଜ ନିଜ ଘରେ ରହନ୍ତି । ଚିକିତ୍ସା ପାଇଁ ଏଠାକୁ ଆସନ୍ତି । ଏଠାର ନିର୍ଦ୍ଦେଶ ଅନୁସାରେ ଘରେ ରହି ମଧ୍ୟ ନିୟମ ପାଳନ କରନ୍ତି । ସମୟ ସମୟରେ ତାଙ୍କ ଘରେ ଯାଇ ସେସବୁ ଦେଖି ଆସିବାକୁ ପଡ଼େ ।

—ନିରୁପମା—

୧ମ—ପ—ସଙ୍କ୍ରାମକ ରୋଗୀମାନେ କ'ଣ କାମ କରନ୍ତି ?

ନିର୍ମଳ—ଭିନ୍ନ ଭିନ୍ନ ଅବସ୍ଥା ପାଇଁ ଭିନ୍ନ ଭିନ୍ନ ଶାରୀରିକ ପରିଶ୍ରମର କାର୍ଯ୍ୟ ଦିଆଯାଏ । କୃଷି, ବଗିଚା, ବଢ଼େଇ କାମ, କମାର କାମ ପ୍ରଭୃତି ଅଛି । ଯେ ଯାହାର ଶକ୍ତି ଓ ରୁଚି ଅନୁସାରେ ସେମାନଙ୍କୁ କାମ ବାଣ୍ଟି ଦିଆଯାଏ ।

୧ମ—ପ—ଔଷଧ ଦିଆଯାଏ କେତେବେଳେ ?

ନିର୍ମଳ—ସକାଳ ୮।୯ ଟା ମଧ୍ୟରେ । ଅଧିକାଂଶ ଦୁଇ ମାଇଲ, ତିନି ମାଇଲ ବା ଚାରି ମାଇଲ ଦୂରରୁ ଆସନ୍ତି । ସେମାନଙ୍କର ଆସିବା-ଯିବା ବ୍ୟାୟାମ କାର୍ଯ୍ୟ ମଧ୍ୟରେ ଧରାଯାଏ ।

୧ମ—ପ—ପ୍ରତିଦିନ ଯିବାଆସିବା କରନ୍ତି ?

ନିର୍ମଳ—ହଁ ସମସ୍ତଙ୍କୁ ଘରରୁ ଦଶରୁ ବାହାର ଆସିବାକୁ ପଡ଼େ । ସନ୍ଧ୍ୟା ପର୍ଯ୍ୟନ୍ତ ରହନ୍ତି । ଦିନରେ ଯେ ଯାହାର ଖାଦ୍ୟ ନିଜେ ନିଜେ ପାକ କରନ୍ତି । ଯେଉଁମାନେ ଏଠାରେ ରହିବାର ରହନ୍ତି । ଅନ୍ୟମାନେ ସନ୍ଧ୍ୟାବେଳେ ଆପଣା ଆପଣା ଘରକୁ ଫେରି-ଯାଆନ୍ତି ।

୧ମ—ପ—ଆରୋଗ୍ୟ ହେବା ପର୍ଯ୍ୟନ୍ତ ଏହିପରି କରନ୍ତି ?

ନିର୍ମଳ—ଆରୋଗ୍ୟ ହେବା ପରେ ମଧ୍ୟ ଅନ୍ୟୂନ ଏକବର୍ଷ ପର୍ଯ୍ୟନ୍ତ ଏହି ନିୟମ ପାଳନ କରି ଏଠାରେ ଆଶ୍ରମର ଉନ୍ନତି ପାଇଁ କାର୍ଯ୍ୟ କରିବାକୁ ସମସ୍ତେ ପ୍ରତିଶ୍ରୁତ ହୋଇଅଛନ୍ତି । ଯେ ଯାହାର ପାକ କରିବା ପାଇଁ ଡାଲି, ଚାଉଳ ପ୍ରଭୃତି ଆପଣା ଆପଣା ଘରୁ ଆଣି-ଥାନ୍ତି । ଯାହାଙ୍କର ଯେପରି ଶକ୍ତିର ଅଭାବ ତାଙ୍କୁ ଆଶ୍ରମରୁ ଦିଆଯାଏ ।

—ନିରୁପମା—

୧ମ—ପ—ସେ ଖର୍ଚ୍ଚ କିପରି, କେଉଁଆଡ଼ୁ ବହନ କରାଯାଏ ?

ନିର୍ମଳ—ଏଠାରେ କୁଟୀରଶିଳ୍ପର ପଦାର୍ଥଗୁଡ଼ିକ ବିକ୍ରୟ ହୁଏ, ତାହାର ମୂଲ୍ୟରୁ; ଏଠା କ୍ଷେତ୍ରରୁ ଯାହା ମିଳେ ତାହା ଓ ପନ୍ନ ପରିବାସବୁ ନିଜେ ନିଜେ ଯାହା ଉତ୍ପାଦନ କରନ୍ତି, ତାହା ମଧ୍ୟ ସେମାନେହିଁ ଉପଭୋଗକରନ୍ତି । ଏହିପରି ଚଳିଯାଏ ।

୧ମ—ପ—ଆରୋଗ୍ୟ ହେଲା ପରେ ଏଠାରେ କାର୍ଯ୍ୟ କରିବା ପାଇଁ ସମସ୍ତେ ଲିଖିତ ପ୍ରତିଶ୍ରୁତି ଦେଇଛନ୍ତି କି ?

ନିର୍ମଳ—ନାହିଁ, ଯାହାଙ୍କ କଥା ଉପରେ ନିର୍ଭର କରି ନ ହେବ, ତାଙ୍କ ଲେଖା ଉପରେ ନିର୍ଭର କରିବା ଭୁଲ ।

୨ୟ—ପ—ଏହି କର୍ମ୍ମକୁଟୀରର ମାଲିକ କିଏ ?

ନିର୍ମଳ—କୁଟୀରବାସୀ ସମସ୍ତେ; ଯେ ଯେତେବେଳେ ରହନ୍ତି ।

୧ମ—ପ—ପ୍ରଧାନ ପରିଚାଳକ କେହି ଜଣେ ଥିବେ ?

ନିର୍ମଳ – ହଁ, ଅଛନ୍ତି । ସେ ବର୍ତ୍ତମାନ କୃଷି ଓ ବଗିଚା ବିଭାଗରେ କାର୍ଯ୍ୟ କରୁଛନ୍ତି । ଏହି କୁଟୀରଶିଳ୍ପ ବିଭାଗର କାର୍ଯ୍ୟ ମୋ ଜିମାରେ ଥାଏ ।

୧ମ—ପ—ଏଠାରେ ବେତନଭୋଗୀ କର୍ମ୍ମଚାରୀ କେତେ ଜଣ ଅଛନ୍ତି ? ସର୍ବାପେକ୍ଷା ଅଧିକ ବେତନ କିଏ ପାଆନ୍ତି ଓ କେତେ ପାଆନ୍ତି ?

ନିର୍ମଳ—ବେତନଭୋଗୀ କେହି ନାହାନ୍ତି । ସମସ୍ତେ ସ୍ୱେଚ୍ଛାସେବକ ଓ ସ୍ୱେଚ୍ଛାସେବିକା ।

୧ମ—ପ—ଶିଳ୍ପଶିକ୍ଷା, ଚିକିତ୍ସାଶିକ୍ଷା ଆଦି ଆମ୍ଭେମାନେ ଦେଖି ପାରିବା କି ?

ନିର୍ମଳ—ନିଶ୍ଚୟ, ଆସନ୍ତୁ ଯିବା ।

( ସମସ୍ତଙ୍କର ପ୍ରସ୍ଥାନ )

---

—ଯବନିକା—

## ୨ୟ ଦୃଶ୍ୟ

### ଆଶ୍ରମବାସୀଙ୍କ ବସନ୍ତ

( ଆଶ୍ରମବାସୀଗଣ ଫାଳିଆ କାଠ ଓ କୁରାଢ଼ୀ ଧରି ପ୍ରବେଶ ,

ଗୀତ

କାଠ ହାଣରେ                    କାଠ ହାଣରେ ଭାଇ
(ବେଳ) ହେଲଣି ତ ଭାତ ରାନ୍ଧିବା ପାଇଁ ।
ଗୋଟି ଗୋଟି କରି                    ହାଣି ଯିବା ଆସ
ମୋଟ ମୋଟ କାଠ ଯେତକ ଥାଇ
ନିଜ ନିଜ କାମ                    ନିଜେ କରି ଯିବା
ନ ରହିବା ପର ହାତକୁ ଚାହିଁ ।
କାଠ ହାଣି ବାହୁ                    ଶକତ ବଢ଼ିବ
ଢଳେ ହେଲେ ଏଥି ସଂଶୟ ନାହିଁ
ଶିରା ପ୍ରଶିରାରେ                    ରକତ ଖେଳିବ
ଯେ ଯାହା ଦେହକୁ ବଳ ବଢ଼ାଇ ।
ଦେହବଳ ଦେଖି                    ଜାଣ ଯେତେ ରୋଗ
ବଳେ ବଳେ ହଟି ଯିବେ ପଳାଇ
କ୍ଷୀଣବଳ ଜନ                    ଯିନା ସେ ଖୋଜନ୍ତି
ତା ଅଙ୍ଗେ ହେଲଣା ଦୁଲଣା ପାଇ ।
ଯେତେ ଯେତୁ ଭୋଗା                    ଅଳସୁଆ ରୋଗୀ
ହାତ ଗୋଡ଼ ତରେ ହଲନ୍ତି ନାହିଁ
ଠିକଣା ଖାଇ ସେ                    ଠିକଣା ରଖନ୍ତି
ଅଙ୍ଗ ଖାଲି ରୋଗ ବଢ଼ିବା ପାଇଁ ।
( ଗୀତ ଗାଇ ଗାଇ ପ୍ରସ୍ଥାନ )

---

—ନିରୁପମା—

## ୩ୟ ଦୃଶ୍ୟ

### ଶିଳ୍ପକୁଟୀରର ଶ୍ରେଣୀ

( କର୍ମୀମାନେ କାଇଁଚର ଭିନ୍ନ ଭିନ୍ନ ପଦାର୍ଥ ନିର୍ମାଣରେ ବ୍ୟସ୍ତ;
ନିର୍ମଳ ସେବିକା ଓ ପରିଦର୍ଶକ ଦୁଇ ଜଣଙ୍କୁ ଦେଖି)

କର୍ମୀଗଣ—ନମସ୍କାର ! (ହାତଯୋଡ଼ି ଅଭିବାଦନ)

ପରିଦର୍ଶକଗଣ—ନମସ୍କାର !

ନିର୍ମଳ—ଏମାନେ କାଇଁଚ କାମ କରୁଛନ୍ତି ।

୧ମ-ପ—ପଦାର୍ଥଗୁଡ଼ିକ ଅତି ସୁନ୍ଦର କରୁଛନ୍ତି ତ ! ଏସବୁ ପଦାର୍ଥ ବିଦେଶକୁ ପଠାଇପାରିଲେ ଅଧିକ ମୂଲ୍ୟରେ ବିକ୍ରୟ ହୋଇ-ପାରନ୍ତା ।

ନିର୍ମଳ—ବର୍ତ୍ତମାନ ସେପରି ବ୍ୟବସ୍ଥା ହୋଇପାରି ନାହିଁ । ସୁବିଧା ହେଲେ ଅବଶ୍ୟ ପଠାଯିବ । ବର୍ତ୍ତମାନ ଏହିଠାରୁ ଆସି ଲୋକେ କିଣି ନେଇ ଯାଉଛନ୍ତି । ଜିନିଷ ପଡ଼ି ରହୁନାହିଁ ।

୧ମ-ପ—ବେଶ ଆନନ୍ଦର କଥା; (ଗୋଟିଏ ପଦାର୍ଥ ଧରି ) ଏହାର ମୂଲ୍ୟ କେତେ ?

ନିର୍ମଳ—ତାର ମୂଲ୍ୟ ଦେଢ଼ ଟଙ୍କା ।

୧ମ-ପ—ମୁଁ ଏଇଟି ନେଉଛି । ( ମୂଲ୍ୟ ପ୍ରଦାନ )

ସ୍ତ୍ରୀକର୍ମୀଗଣ— ( ଗୀତ )

( କୁଆଁରପୂନେଇ ଗୀତ—ବୃତ୍ତରେ )

ବିଧାତା ଦେଇଛି ଶକ୍ତି
କାଇଁଚ ଉଠୁଛି ନ ପୋଡ଼ି ମଞ୍ଜି
ନ ପୋଡ଼ି ମଞ୍ଜି ଗୋ,
ତାକୁ ନ ଚିହ୍ନି ହେଉଛେ ଶକ୍ତି, ଭଉଣୀ ଗୋ ।

—ନିରୁପମା—

ଆମ ଦେଶର ଏ ଘାସ,
କେହି ନ କରନ୍ତୁ ଏହାକୁ ଘୃଣ
ଏହାକୁ ଘୃଣ ଗୋ,
ଏ ତ ଦୁଃଖୀ ରଙ୍କୀଙ୍କର ଆଶ, ଭଉଣୀ ଗୋ ॥
ଆମ ଏ ଦୁଃଖୀ ଦେଶରେ,
ବହୁ ଖଞ୍ଜିଛନ୍ତି କେତେ ରୂପରେ,
କେତେ ରୂପରେ ଗୋ,
ଖଟି ଖାଇବା ପାଇଁ ଦୁଃଖରେ, ଭଉଣୀ ଗୋ ।
ନ ଝଟି ବସିଲେ ଘରେ,
ଲୋକ ଉପାସରେ କିଏ କା ପାଇଁ,
କିଏ କା ପାଇଁ ଗୋ,
ଆଣି ପାଟିରେ ଦେବ ଧରାଇ, ଭଉଣୀ ଗୋ ॥

୧ମ-ପ — ବାଃ ! କାର୍ଯ୍ୟଶିକ୍ଷା ସଙ୍ଗେ ସଙ୍ଗେ ପଦାର୍ଥମାନଙ୍କର ଗୁରୁତ୍ୱ ଓ ଆବଶ୍ୟକତାର ଗୁରୁତ୍ୱ ମଧ୍ୟ ଏମାନେ ହୃଦୟଙ୍ଗମ କରିବାକୁ ଶିଖୁଛନ୍ତି । ଅତି ଆନନ୍ଦର କଥା ।

ନିର୍ମଳ—ଏହିପରି ଭିନ୍ନ ଭିନ୍ନ ପଦାର୍ଥର କାର୍ଯ୍ୟ ସବୁ ଶିକ୍ଷା ଦିଆଯାଉଛି । ଚାଲନ୍ତୁ, ଆଉ ଗୋଟିଏ ପଦାର୍ଥର କାର୍ଯ୍ୟ ଦେଖିବେ ।

( ନିର୍ମଳ ଏବଂ ପରିଦର୍ଶକମାନଙ୍କର ଅଗ୍ରସର )

( କିଆପତ୍ରର କର୍ମୀମାନଙ୍କର ଆଗନ୍ତୁକମାନଙ୍କୁ ଅଭିବାଦନ )

କର୍ମୀଗଣ—ନମସ୍କାର !

—ନିରୁପମା—

ପରିଦର୍ଶକଗଣ—ନମସ୍କାର !

ନିର୍ମଳ—ଏମାନେ କଂଆପତ୍ରର କାମ କରୁଛନ୍ତି ।

୧ମ-ପ—(ଗୋଟିଏ ପଦାର୍ଥ ଧରି) ଏସବୁ କଂଆପତ୍ରରେ, କଂଆପତ୍ରରେ ଏପରି ପଦାର୍ଥ ହୋଇପାରେ ! ମୁଁ ଏଇଟି ନେବି । ଏହାର ମୂଲ୍ୟ କହନ୍ତୁ ।

ନିର୍ମଳ—ମୂଲ୍ୟ ଟ ୬୧ ( ମୂଲ୍ୟ ଗ୍ରହଣ )

୧ମ-ପ—ଗାଁମାନଙ୍କରେ କଆଗଛ ମାଡ଼ିଯାଉଛି । ପତ୍ର ଖାଲି ନଷ୍ଟ ହେଉଛି । ସେଥିରୁ ଏପରି ପଦାର୍ଥ ହୋଇପାରେ । ଏହା ଗ୍ରାମେ ଗ୍ରାମେ ଯେବେ ଶିଖାଇ ଦିଆଯାଏ, ତେବେ ନିଷ୍କର୍ମା ହୋଇ ବସି ରହିଥିବା କେତେ ଲୋକ କାମ ପାଇପାରନ୍ତେ । ଏ ପଦାର୍ଥ ଯେଉଁଠାକୁ ଯିବ, ସେଠାରେ ଏହାର ଆଦର ହେବ ।

ନିର୍ମଳ—ଆମ ଦେଶରେ ନାନାପ୍ରକାରର ଏହିପରି ପଦାର୍ଥ ଅକାରଣ ନଷ୍ଟ ହେଉଛି । କେବଳ ନଷ୍ଟ ହେଉଥିବା ପଦାର୍ଥଗୁଡ଼ିକୁ ଯେବେ ଆମ ଲୋକେ ବ୍ୟବହାର କରି ଶିଖନ୍ତେ, ତେବେ କେତେ ଅର୍ଥ ଉପାର୍ଜନ କରିପାରନ୍ତେ ।

୧ମ-ପ—ଏହିପରି ଆଉ କି କି ପଦାର୍ଥରେ ଏଠାରେ ଶିଳ୍ପଶିକ୍ଷା ଦିଆଯାଏ ?

ନିର୍ମଳ—କଆ ଚେରରେ ବେତ ପରି କାମ ହେଉଛି । କଦଳୀ ବାହୁଙ୍ଗାରୁ ସୁନ୍ଦର ମଶିଣା ହେଉଛି । ଦେଖିବାକୁ ସପ ପରି । ବାଉଁଶ ଚୋପାରୁ ପଙ୍ଖା, ଫୁଲଝୁଡ଼ି ପ୍ରଭୃତି ହେଉଛି । ତାଳପତ୍ର, ଖଜୁରିପତ୍ର, କୁଟା ଆଦିରେ କେତେ ପ୍ରକାର ପଦାର୍ଥ ହୋଇ-ପାରୁଛି । ମୋଟ ଉପରେ ଯାହା ସବୁ ସାଧାରଣତଃ ଲୋକେ ଫୋପାଡ଼ି ଦିଅନ୍ତି ବା ଯାହାକୁ କେହି ନ ଖୋଜିବାରୁ ଆପେ

ଆପେ ନଷ୍ଟ ହୋଇଯାଏ, ଆମେ ଠିକ୍ ସେଇ ପଦାର୍ଥଗୁଡ଼ିକ ଆଣି ତାହାଁର କିଛି ନା କିଛି ବ୍ୟବହାର ଶିକ୍ଷା ଦେଉଛୁଁ ।

୧ମ-ପ—ଆପଣମାନେ ଖୁବ୍ ମହତ୍ କାର୍ଯ୍ୟ କରୁଛନ୍ତି ।

ନିର୍ମଳ—ପ୍ରଥମେ ଏଇଭଳି ପଦାର୍ଥରେ ହାତ ଓ ଆଖି ତାଲିମ ହୋଇଗଲେ ତେଣିକି ଯେ କୌଣସି ମୂଲ୍ୟବାନ ପଦାର୍ଥ ବ୍ୟବହାର କରି ଆହୁରି ଅଧିକ ମୂଲ୍ୟବାନ ପଦାର୍ଥ ସହଜରେ କରିପାରିବେ ।

୧ମ-ପ—ଏହା ଖୁବ୍ ଉତ୍କୃଷ୍ଟ ଆଦର୍ଶ ।

କର୍ମୀଗଣ—  ଗୀତ

ଜିଆବୁଦା ପଣ ପଣ
ମାଡ଼ିଯାଉଛି ଦେଶରେ
ନ ଖାଲିଁ କେତେ ରତନ
ଭରି ଥାଇ ସେ ଗଛରେ, ସେ ଜିଆଗଛରେ ।
ଶୁଖିଗଲେ ତା ପତର
ଗୋଟାଇ ଚୁଲି ମୁହଁରେ
ନ ବୁଝି ଦେଉଛେଁ ଜାଳି
କେତେ ଧନ ସେପତରରେ, ସେ ଜିଆପତରେ ।
ଜିଆଗଛ ଟଙ୍କା ଗଛ,
ଟଙ୍କା ଫଳେ ସେ ଗଛରେ
ଝଡ଼ାଇ ଜାଣିଲେ ଟଙ୍କା
ଝଡ଼ିଥାଇ ସହଜରେ, ଝଡ଼ିବ ସଜରେ ।
ଧନ ଧନ ଖୋଜୁଥାଇଁ
ଧନ ଆମରି ପାଖରେ,
ଦେହ ନ ଗଢ଼ିଲେ ଧନ,
ଧରି ନ ପଡ଼େ ହାତରେ, ନ ପଡ଼େ ହାତରେ ।।

—ନିରୁପମା—

ହେମ-ପ—ହାତ, ମନ, ମୁଣ୍ଡ ଓ ଆଖି ଏ ସମସ୍ତଙ୍କ ପରିଚାଳନାର ଶିକ୍ଷା ଅତି ଉପଯୁକ୍ତ ପ୍ରଣାଳୀରେ ଆପଣମାନେ ଆରମ୍ଭ କରିଛନ୍ତି—ବଡ଼ ଆନନ୍ଦର କଥା । ନୃତ୍ୟ ଗୀତ ବିଷୟ ମଧ୍ୟ ଏମାନେ ଶିକ୍ଷା କରିଛନ୍ତି ।

ନିର୍ମଳ—ହଁ, ଏମାନେ ସମସ୍ତେ ଶିଖିଛନ୍ତି । ଅନ୍ୟ ଦିନରେ ଦେଖିବେ ଚାଲନ୍ତୁ ।

କର୍ମୀଗଣ—ନମସ୍କାର !

ପରିଦର୍ଶକଗଣ—ନମସ୍କାର !

(ନିର୍ମଳ ଓ ପରିଦର୍ଶକମାନଙ୍କର ପ୍ରସ୍ଥାନ)



—ନିରୁପମା—

## ୪ର୍ଥ ଦୃଶ୍ୟ

(ଖେଳ ପଡ଼ିଆ)

(ନିର୍ମଳ ସେବିକା ଓ ପରିଦର୍ଶକମାନଙ୍କର ପ୍ରବେଶ ଓ
ଏକପାର୍ଶ୍ୱରେ ଦଣ୍ଡାୟମାନ)

କର୍ମୀମାନଙ୍କର ନୃତ୍ୟ ଓ ଗୀତ

ଆଉ ତ ନାହିଁରେ ସକାଳ ପଖାଳ
ନାହିଁ ଆଉ ନାଉ କାନ୍ତି
ପୁହା·ରୁଟି ତୃପ୍ତି ଧରି ସାରିଲଣି
ଗଲଣି ସେ ଅଖ ଭ୍ରାନ୍ତି ।।
ବଡ ଚଡ଼ଘରେ କୁଷ୍ଠରୋଗ ଶାଳ
ଯୋଡ଼ିହୁଏ ମୋଳା ଗେଣ୍ଠି
ଗରିବଙ୍କୁ ପୁଣି ନାକ ଛୁଆଁ ଦେଇ
ଖେଳାଇବ କାଳେ ମନ୍ତ୍ରି
କରମ ଦୋଷକୁ ମରମ ଯନ୍ତ୍ରଣା
ହେଉଥାଇ ଯେତେ ଗଣ୍ଠି
ଏହିଭଳି ଅନୁଷ୍ଠାନ ବିନା ତାଙ୍କୁ
କିଏ ଦେବ କେତେ ଖଣ୍ଡି ।।
(ସମସ୍ତଙ୍କର ପ୍ରସ୍ଥାନ)

———

—ନିରୁପମା—

# ୫ମ ଦୃଶ୍ୟ

## (କୁଷ୍ଠରୋଗ ବିଜ୍ଞାନଶ୍ରେଣୀ)

( ଛାତ୍ର ଓ ଛାତ୍ରୀମାନେ ଉପବିଷ୍ଟ—ଜଣେ ପୁରାତନ ଛାତ୍ରୀଙ୍କ ସହିତ ଆଲୋଚନା—ନିର୍ମଳ ଓ ପରିଦର୍ଶକମାନଙ୍କର ପ୍ରବେଶ )

ଛାତ୍ର-ଛାତ୍ରୀଗଣ—ନମସ୍କାର ! (ହାତଯୋଡ଼ି ଅଭିବାଦନ)

ପରିଦର୍ଶକଗଣ—ନମସ୍କାର !

ନିର୍ମଳ—ଚାଲୁ ଚାଲୁ, ତୁମ୍ଭମାନଙ୍କର ଆଲୋଚନା ଚାଲୁ । ତମ ଆଲୋଚନାରେ ଆମ୍ଭେମାନେ ବାଧା ଦେବାକୁ ଆସି ନାହୁଁ । ବରଂ ଏମାନେ ଆଲୋଚନା ଶୁଣିବାକୁ ଆସିଛନ୍ତି ।

ପୁରାତନ ଛାତ୍ରୀ—ଆଚ୍ଛା, ପିତା ବା ମାତା କୁଷ୍ଠରୋଗୀ ହୋଇଥିଲେ ଲୋକେ ମନେ କରନ୍ତି ଯେ ତାଙ୍କ ପିଲାଏ ନିଶ୍ଚୟ କୁଷ୍ଠରୋଗୀ ହେବେ, ଏକଥା କଣ ଠିକ୍ ?

୧ମ ଛାତ୍ରୀ—ହଁ, ତା ହବା ସ୍ୱାଭାବିକ । ବାପ, ମାଙ୍କ ରୋଗ ତାଙ୍କ ପିଲାଙ୍କଠାରେ ନିଶ୍ଚୟ ଦେଖାଦେବ ।

ପୁ: ଛାତ୍ରୀ—କୁଷ୍ଠରୋଗ ସମ୍ବନ୍ଧେ ଏପରି ଧାରଣା ଭାରି ଭୁଲ୍ । ପରୀକ୍ଷାରେ ଦେଖାଯାଉଛି—କୁଷ୍ଠୀ ମାତା ପ୍ରସବ କଲାପରେ ଶିଶୁଟିକୁ ତା ମା' ପାଖରୁ ଅନ୍ତର କରି ନେଇ ଅନ୍ୟତ୍ର ପାଳନ କଲେ ସେ ପିଲାର କୁଷ୍ଠରୋଗର କୌଣସି ଚିହ୍ନ ଦେଖାଯାଉ ନାହିଁ ।

୨ୟ ଛାତ୍ରୀ—ଏ କଥା କିପରି ବିଶ୍ୱାସ କରିବା ? ଆମ ଗାଁରେ ବିଧିଆ ମାର କୁଷ୍ଠରୋଗ, ତାର ଦଶବର୍ଷର ପିଲାଟାଏ, ତାଠେଇଁ ରୋଗ ଦେଖାଗଲାଣି ।

ପୁ: ଛା—ସେ ପିଲା ନିଶ୍ଚୟ ତା ମା ପାଖରେ ବରାବର ଥିଲା ।

୨ୟ: ସ୍ତ୍ରୀ—ହଁ, ମା ପାଖରୁ ଆଉ କୁଆଡେ଼ ଯାଆନ୍ତା !

ପୁ: ସ୍ତ୍ରୀ—କୁଷ୍ଠରୋଗ ଯଦି ଜନ୍ମଗତ ହୋଇଥାନ୍ତା, ତେବେ ବର୍ଷେ ୬ମାସ ମଧ୍ୟରେ ବା ଜନ୍ମ ସାଙ୍ଗେ ସାଙ୍ଗେ ପିଲାଟା ଦେହରେ ରୋଗ ଜଣା ପଡ଼ିଥାନ୍ତା । ଏତେ ଦିନ ପରେ ଦଶ ବର୍ଷରେ ରୋଗ ବାହାରିବାର କାରଣ ଜଣାଯାଉଛି, ମା' ସଂସର୍ଗରେ ରହିବାରୁ ସଂକ୍ରାମକ ଦୋଷ ଦ୍ୱାରା ମା' ଠାରୁ ତା'ଦେହରେ ରୋଗର ଜୀବାଣୁ ପ୍ରବେଶ କରିଛନ୍ତି ।

୨ୟ: ସ୍ତ୍ରୀ—ତା ହୋଇପାରେ !

ପୁ: ସ୍ତ୍ରୀ—ଆମେ ସମସ୍ତେ ଜାଣୁ ରୋଗୀ ଦେହରେ କିଛି କ୍ଷତ ନ ହେଲେ ତା ଦେହରୁ ଜୀବାଣୁ ବାହାରିବେ ନାହିଁ । କିନ୍ତୁ କେତେ ରୋଗୀଙ୍କ ଦେହରେ କିଛି କ୍ଷତ ନ ଥାଇ ନାକ ଭିତରେ ବା ତଣ୍ଟିରେ ମଧ୍ୟ ଘା ହୁଏ । ସେପରି ରୋଗୀ ଛିଙ୍କିଲେ ବା କାଶିଲେ, ନାକ ପୋଛିଲେ କି ଛେପ ପକେଇଲେ ମଧ୍ୟ ଜୀବାଣୁ ବାହାରିବେ । ଏ ସବୁ ସହଜରେ ଜାଣିବା କଠିନ । ସେଇଥି ଲାଗି ମୋଟଉପରେ କୁଷ୍ଠରୋଗୀଙ୍କଠାରୁ ଦୂରରେ ରହିବା ଶ୍ରେୟ । ଶିଶୁ ଓ ବାଳକବାଳିକାଙ୍କୁ ଏ ରୋଗଟା ଶୀଘ୍ର ଆକ୍ରମଣ କରେ ।

୧ମ: ସ୍ତ୍ରୀ—ସବୁ ରୋଗୀଙ୍କର ରୋଗ ତ ସଂକ୍ରାମକ ନୁହେଁ !

ପୁ: ସ୍ତ୍ରୀ—କହିବାକୁ ଗଲେ ଶତକଡ଼ା ୮୪ ଜଣଙ୍କର ରୋଗ ସଂକ୍ରାମକ ନୁହେଁ । କିନ୍ତୁ କିଏ ସଂକ୍ରାମକ, କିଏ ସଂକ୍ରାମକ ନୁହେଁ, ଏହାକୁ ଯେବେ ସାଧାରଣ ଲୋକେ ଚିହ୍ନି ପାରନ୍ତେ, ତା ହେଲେ

ଅନେକ ସୁବିଧା ହୁଅନ୍ତା । କିନ୍ତୁ ସେତିକ ସମସ୍ତେ ନ ବୁଝିବା ପର୍ଯ୍ୟନ୍ତ ସବୁ ରୋଗୀଙ୍କର ଅସୁବିଧା ଓ ସାଧାରଣ ଲୋକଙ୍କର ମଧ୍ୟ ବହୁତ ଅସୁବିଧା ହେଉଛି । ଯାହାଙ୍କର ରୋଗ ସଂକ୍ରାମକ ନୁହେଁ ସେମାନେ ମଧ୍ୟ ହଇରାଣ ହେଉଛନ୍ତି । ଲୋକେ ବି ହଇରାଣ ହେଉଛନ୍ତି ।



ଆସ୍ଥ: ଗ୍ର—ଆଚ୍ଛା, ଯେଉଁମାନଙ୍କ ରୋଗ ସଂକ୍ରାମକ ନୁହେଁ ତାଙ୍କୁ କୁଷ୍ଠରୋଗୀ ନ କହି ସେ ରୋଗର ନାମ ଆଉ ଗୋଟାଏ କିଛି କହିଲେ ହୁଅନ୍ତା ନାହିଁ ? ତା ହେଲେ ଯାହା କହିଲ ଶତକରା ୮୪ ଜଣଙ୍କର ରୋଗ ସଂକ୍ରାମକ ନୁହେଁ, ତେବେ ତ ଶତକରା ୮୪ଭାଗ ଆତଙ୍କରୁ ଲୋକେ ରକ୍ଷା ପାଆନ୍ତେ ।

ସୁ-ଗ୍ରନ୍ଥ—ଯାହା କହିଲ ସତ, କିନ୍ତୁ ସଂକ୍ରାମକ ନ ହେଲେ ବି ରୋଗଟା କୁଷ୍ଠରୋଗ ଶ୍ରେଣୀ ଅନ୍ତର୍ଗତ; କେବଳ ସଂକ୍ରାମକ ଦୋଷବର୍ଜିତ । ଯେପରି କେତେଗୁଡ଼ିଏ ଗଛ ଅଛି, ଯଥା—ପପେୟା ଗଛ, ତାଳଗଛ । ସେଥିରୁ କେତେଗୁଡ଼ାଏ ଗଛରେ ପପେୟା କି ତାଳ ଆଦୌ ଫଳେ ନାହିଁ । କିନ୍ତୁ ତାକୁ ତ ପପେୟା ଗଛ ବା ତାଳ ଗଛ ଛଡ଼ା ଆଉ ଅନ୍ୟ ନାମରେ ଡକାଯାଇ ହେବ ନାହିଁ ।

୧ମ-ପ—କୁଷ୍ଠରୋଗ ସମ୍ବନ୍ଧେ ଏ ଯେ କେତୋଟି କଥା ଏମାନଙ୍କ ଆଲୋଚନାରୁ ଶୁଣିଲି ସେଗୁଡ଼ିକ ଆମେ ତ ନିଜେ ଜାଣି ନ ଥିଲୁ । ସାଧାରଣ ଲୋକେ ଏହା ଆଦୌ ଜାଣନ୍ତି ନାହିଁ । ଏ ସବୁ ଶିକ୍ଷା-ଦେବା ଦିଗରେ ଆପଣମାନେ ଯାହା ଉଦ୍ୟମ କରିଅଛନ୍ତି ତାହା ଦେଖି ଆମ୍ଭେମାନେ ଆଶ୍ଚର୍ଯ୍ୟ ହେଉଛୁ । ଆମେ ଗୋଟିଏ କ୍ଷୁଦ୍ର କୁଷ୍ଠସେବା ଆଶ୍ରମ ଆମ ଅଞ୍ଚଳରେ କରିବା ଲାଗି ମନସ୍ଥ

କରନ୍ତୁ । ସେ ସମ୍ବନ୍ଧେ କିଛି ସୂଚନା ପାଇବା କାରଣ ଏଠାକୁ ଆସିଥିଲୁଁ ଯେ ଆପଣମାନଙ୍କ ସହିତ ପରାମର୍ଶ କରନ୍ତୁ । କିନ୍ତୁ ଆପଣମାନଙ୍କର ପ୍ରତ୍ୟେକ କାର୍ଯ୍ୟରୁ ଯଥେଷ୍ଟ ସୂଚନା ପାଇଲୁଣି; ଆପଣମାନଙ୍କୁ ଧନ୍ୟବାଦ ଜଣାଉଅଛୁଁ ।

ନିର୍ମଳ—ଆପଣମାନେ ଯେବେ ଗୋଟିଏ ନୂତନ ଅନୁଷ୍ଠାନ ଗଢ଼ିବାକୁ ଇଚ୍ଛା କରୁଅଛନ୍ତି, ତେବେ ଏହି କୁଟୀରର ପ୍ରକୃତ ଜନ୍ମଦାତା ଓ ଗଠନକର୍ତ୍ତ୍ରୀଙ୍କ ସହିତ ପରାମର୍ଶ କରନ୍ତୁ । ସେ ଆପଣମାନଙ୍କୁ ଉପଯୁକ୍ତ ପରାମର୍ଶ ଦେଇପାରିବେ । ସେ ବର୍ତ୍ତମାନ କୃଷି ଓ ବଗିଚା ବିଭାଗରେ ଅଛନ୍ତି । ଆପଣମାନେ ତାଙ୍କ ସହିତ ପରାମର୍ଶ କଲେ ଭଲ ହେବ ।

ପ୍ରମ-ପ—ହଉ ଆମ୍ଭେମାନେ ଯାଉଛୁଁ ତାଙ୍କ ସହିତ ପରାମର୍ଶ କରିବୁଁ ।
( ଯିବାକୁ ଉଦ୍ୟମ )

ଶିକ୍ଷାର୍ଥୀଗଣ—( ହାତଯୋଡ଼ି ନମସ୍କାର କରିବା)

ପରିଦର୍ଶକଗଣ—ନମସ୍କାର ! ( ପରିଦର୍ଶକମାନଙ୍କର ପ୍ରସ୍ଥାନ )



—ନିରୁପମା—

## ଷଷ୍ଠ ଦୃଶ୍ୟ

### ଉଦ୍ୟାନ

( ଚନ୍ଦ୍ର ଜୀବନ-ସେବକ ଓ କର୍ମୀମାନଙ୍କର କୋଡ଼ି କାଙ୍କ ପ୍ରଭୃତି ଧର କାର୍ଯ୍ୟରେ ବ୍ୟସ୍ତ—ପରିଦର୍ଶକ ଦୁଇଜଣଙ୍କର ପ୍ରବେଶ )

କର୍ମୀଗଣ—ନମସ୍କାର !

ପରିଦର୍ଶକଗଣ—ନମସ୍କାର !

୧ମ-ପ—ଏଠାରେ ତ ଖାଲି କାମକରାଳୀ ଗୁଡ଼ିଏ କାମ କରୁଅଛନ୍ତି, ପ୍ରଧାନ ପରିଚାଳକ କାହାନ୍ତି ? ଏଠାରେ ତ ନାହାନ୍ତି । କଥାବାର୍ତ୍ତା ହେବା କାହା ସଙ୍ଗରେ ?

୨ୟ-ପ—ଏହିମାନଙ୍କୁ କାହାକୁ ପଚାରିଲେ ସେ କୁଆଡେ ଯାଇଛନ୍ତି, ଜଣା ପଡ଼ିବ । ସେ କେତେବେଳେ ଆସିବେ ତାହା ମଧ୍ୟ ଏହିମାନେ କହି ପାରିବେ ।

୧ମ-ପ— ( କର୍ମୀମାନଙ୍କ ପ୍ରତି ) ହଇହୋ, ଏଇଟି ଏହି କର୍ମକୁଟୀରର ବଗିଚା ତ ?

କର୍ମୀଗଣ—ହଁ, କର୍ମକୁଟୀରର ବଗିଚା ।

୧ମ-ପ—କର୍ମକୁଟୀରର ପ୍ରଧାନ ପରିଚାଳକ କାହାନ୍ତି ? ସେ ଏଠାକୁ କେତେବେଳେ ଆସିବେ ?

( କର୍ମୀମାନଙ୍କ ମଧ୍ୟରୁ ଜଣେ କର୍ମୀ ପରିଦର୍ଶକମାନଙ୍କ ନିକଟକୁ ଅଗ୍ରସର ହୋଇ )

ଅନ୍ୟ-କର୍ମୀ—ଆପଣ କାହିଁକି ତାଙ୍କୁ ଖୋଜୁଛନ୍ତି ?

୧ମ-ପ—ତାଙ୍କ ସହିତ କିଛି କଥାବାର୍ତ୍ତା ହେବାକୁ ଅଛି ।

ଅଗ୍ର-କର୍ମୀ—କେଉଁ ବିଷୟରେ, ଏହି କୁଟୀର ବିଷୟରେ କି ଅନ୍ୟ କୌଣସି ବିଷୟରେ ?

୧ମ-ପ—ନାହିଁ; ଏହି କୁଟୀର ବିଷୟରେ ।

ଅଗ୍ର-କର୍ମୀ—କୁଟୀର ବିଷୟରେ ଯାହା ଜାଣିବାକୁ ଚାହିଁବେ ଏହି କର୍ମୀ-ମାନଙ୍କ ମଧ୍ୟରୁ ଯାହାକୁ ପଚାରିବେ ତାଙ୍କଠାରୁ ଆପଣ ସମସ୍ତ ବିବରଣ ବୁଝିପାରିବେ । ଏଠାରେ ପ୍ରଧାନ ଓ ଅପ୍ରଧାନ କେହି ନାହାନ୍ତି । ସମସ୍ତେ ସମାନ । ସମସ୍ତେ କର୍ମୀ । କର୍ମୀଙ୍କ ଛଡ଼ା ଅନ୍ୟ କାହାରି ଏ ସମ୍ବନ୍ଧେ ଅଧିକ ଜାଣିବାର ସମ୍ଭାବନା ନାହିଁ ।

୧ମ-ପ—ଆମେ ଖୋଜୁଛୁ ଯେ ଏହି ଅନୁଷ୍ଠାନଟି ଗଢ଼ିଛନ୍ତି ତାଙ୍କ ସହିତ ଟିକିଏ କଥାବାର୍ତ୍ତା ହେଲେ ଏହାର ପରିଚାଳନା ସମ୍ବନ୍ଧେ କେତେକ ବିଷୟ ବୁଝିପାରନ୍ତୁ ।

ଅଗ୍ର-କର୍ମୀ— ଅନୁଷ୍ଠାନଟିକୁ ତ ଏହି କର୍ମୀମାନେ ଗଢ଼ିଛନ୍ତି, ଏହି କର୍ମୀମାନେ ଏହାର ପରିଚାଳକ ।

୧ମ-ପ—ଓହୋ—ତେମେ କହିଲ ପ୍ରଧାନ ପରିଚାଳକ ଏଠାକୁ ବର୍ତ୍ତମାନ ଆସିବେ କି ନାହିଁ, ଯେବେ ଆସିବେ ତ କେତେବେଳେ ଆସିବେ ?

ଅଗ୍ର-କର୍ମୀ—ମୁଁ ତ ଆଗେ ଆପଣଙ୍କ କଥା ବୁଝିପାରୁ ନାହିଁ । ଆପଣ କାହାକୁ ଖୋଜୁଛନ୍ତି । ଏଥିର ପ୍ରଧାନ ପରିଚାଳକ ବୋଲି କେହି ନାହାନ୍ତି ।

୧ମ-ପ—ତମ ନାଁ କଅଣ କହିଲ ? ତମେ ତ ଜଣେ କର୍ମୀ—ଏଠାରେ ପ୍ରଧାନ ପରିଚାଳକ କିଏ ତମେ ଏପର୍ଯ୍ୟନ୍ତ ଜାଣି ନାହିଁ । କୁହ ତମର ନାମ ?

ଅଗ୍ର-କର୍ମୀ—ମୋ ନାଁ ଚନ୍ଦ୍ର, ଜୀବନ ସେବକ ।

୧ମ-ପ—ନମସ୍କାର ! ନମସ୍କାର !

—ନିରୁପମା—

ଚନ୍ଦ୍ର—ନମସ୍କାର !

୧ମ-ପ – ମାଫ୍ କରିବେ, ଆମେ ଆପଣଙ୍କୁ ହିଁ ଖୋଜୁଥିଲୁଁ । ଆପଣଙ୍କର ନାମ ଶୁଣିଅଛୁଁ । ଆପଣ ଯେ 'ସମସ୍ତଙ୍କ ସହିତ ଏପରି ଭାବରେ କାର୍ଯ୍ୟ କରୁଥିବେ ଏହା ଆଦୌ କଳ୍ପନା କରି ପାରି ନ ଥିଲୁ । ତେଣୁ ଆମ୍ଭମାନଙ୍କର ଏପରି ଭୁଲ ହୋଇଅଛି ।

ଚନ୍ଦ୍ର—ଆଜ୍ଞା, ନାହିଁ କିଛି ନାହିଁ । ଦୁଃଖ କରିବାର କୌଣସି କାରଣ ନାହିଁ । କର୍ମୀର କର୍ମ ହେଲା ମୂଳ । କର୍ମ ତାହାର ଦେବତା । କର୍ମ ମଧ୍ୟରେ ଶ୍ରେଷ୍ଠ ବଡ ବିଗୃହ କରିବାର ଅଧିକାର କର୍ମୀର ନାହିଁ ।

୧ମ-ପ—ମୁଁ ଶୁଣିଛି ଆପଣ ଜଣେ ଶିକ୍ଷିତ ଯୁବକ । ଶିକ୍ଷିତ ସମାଜରେ କର୍ମ ପ୍ରତି ଘୃଣା,କର୍ମ ମଧ୍ୟରେ ଶ୍ରେଷ୍ଠ ବଡ଼ ବିଗୃହ ପ୍ରଭୃତି କେତେ-ଗୁଡ଼ିଏ ଧ୍ୱଂସମୂଳକ ଭାବ ଓ ଅଭ୍ୟାସ ଶିକ୍ଷିତ ସମାଜରେ ପ୍ରବେଶ କରିଅଛି, ତାହାହିଁ ଏ ଜାତିକୁ ଧ୍ୱଂସ କରିବ । ଏ କଥା ସମସ୍ତେ ଜାଣୁଥାଇଁ, ବୁଝୁଥାଇଁ ଓ ବଡ଼ ବଡ଼ ସଭାରେ ଭାଷଣ ଦେଉଥାଇଁ ସତ୍ୟ, କିନ୍ତୁ କାମ ବେଳକୁ ଆପଣଙ୍କ ପରି ଉଦାହରଣ ଦେଖାଇବା ବ୍ୟକ୍ତି ବିରଳ । ତେଣୁ ଆପଣ ସେହି ଶିକ୍ଷିତ ସମାଜରେ ଶିକ୍ଷାଲାଭ କରି ଏପରି କୋଡ଼ି, କାଙ୍କ ଧରି କାର୍ଯ୍ୟ କରୁଥିବେ ବୋଲି ବିଶ୍ୱାସ କରି ପାରୁ ନ ଥିଲୁଁ ।

ଚନ୍ଦ୍ର—ମାଫ୍ କରିବେ । ମୁଁ ଅତି ସାମାନ୍ୟ ଲୋକ, ମୋତେ କାହିଁକି ଖୋଜୁଥିଲେ, କହନ୍ତୁ । ଯଦି ମୋ ଦ୍ୱାରା କିଛି କାର୍ଯ୍ୟ ହୋଇପାରେ ମୁଁ ତାହା କରିବାକୁ କଦାଚ କୁଣ୍ଠିତ ହେବି ନାହିଁ ।

୧ମ-ପ—ନାହିଁ, ଆଉ ଅଧିକ କହିବାକୁ କିଛି ନାହିଁ । ଆମ ଅଞ୍ଚଳରେ ଅଳ୍ପ ବ୍ୟୟରେ ଗୋଟିଏ କ୍ଷୁଦ୍ର କୁଷ୍ଠସେବା ଅନୁଷ୍ଠାନ

ଖୋଲିବାର କଳ୍ପନା କରି ଆପଣଙ୍କ ସହିତ ସେ ବିଷୟ ପରାମର୍ଶ କରିବାକୁ ଆସିଥିଲୁଁ, ଯେବେ କିଛି ସୂଚନା ପାଇପାରନ୍ତୁ। କିନ୍ତୁ ଏହି କୁଟୀରର ଭିନ୍ନ ଭିନ୍ନ ଅଂଶରେ ବୁଲି ଯାହା ସବୁ ଦେଖିଲୁଁ, ତହିଁରେ ଗୋଟି ଗୋଟି କରି ପ୍ରତ୍ୟେକ କାର୍ଯ୍ୟରୁ ଯଥେଷ୍ଟ ସୂଚନା ପାଇ ସାରିଲୁଁ। ବାକି ଥିଲା ଏହି କୃଷି ଓ ବଗିଚା ବିଭାଗ ଏବଂ ଆପଣଙ୍କର ପ୍ରତ୍ୟକ୍ଷ ଦର୍ଶନ।

ଚନ୍ଦ୍ର—ମୁଁ ଅତି ଅକିଞ୍ଚନ ବ୍ୟକ୍ତି, ମୁଁ କି ପରାମର୍ଶ ଦେବି। .

୧ମ-ପ—ଆପଣଙ୍କର କାର୍ଯ୍ୟହିଁ ପରାମର୍ଶ ଦେଉଅଛି। ଆପଣ ସାମାନ୍ୟ ଲୋକ ନୁହନ୍ତି। ଆମ୍ଭମାନଙ୍କର ଆଉ କିଛି ପଚାରିବାର ନାହିଁ। ଆଗେ କାର୍ଯ୍ୟ ଆରମ୍ଭ କରୁଁ। ଯେତେବେଳେ ଯାହା ଅସୁବିଧା ଘଟିବ, ଆବଶ୍ୟକ ହେଲେ ଆସି ଆପଣଙ୍କ ସହିତ ପରାମର୍ଶ କରିବୁଁ। ବର୍ତ୍ତମାନ ବିଦାୟ ହେଉଅଛୁଁ—ନମସ୍କାର !

ଚନ୍ଦ୍ର—ନମସ୍କାର—[ପରିଦର୍ଶକମାନଙ୍କର ପ୍ରସ୍ଥାନ]



## ସପ୍ତମ ଦୃଶ୍ୟ

### ପଲ୍ଲୀପଥ

[ କୁଷ୍ଠନିବାରଣୀ ସଂଘର ଦାଣକାଠିଆ ପ୍ରଚାରକମାନଙ୍କର
ଗୀତ ଗାଇ ଗାଇ ପ୍ରବେଶ ]

ଗୀତ

କୁଷ୍ଠରୋଗ ବିସ୍ତାରକୁ ରୋକିବ
(ଆଗେ) କୁଷ୍ଠୀଗଣେ ଦୂରେ ରଖିବ ।
ବୁଝାଇ ମଙ୍ଗାଇ କାହା ସଙ୍ଗେ କାହିଁ
ନ ମିଶିବେ ଦୃଷ୍ଟି ରଖିବ ।
(ସଦା) କୁଷ୍ଠୀଗଣେ ଦୃଷ୍ଟି ରଖିବ ।
(କୁଷ୍ଠୀ) ନିଷ୍ଠାରେ ଯେମନ୍ତେ ରହିବ ।
(ତୁଚ୍ଛ) କାହାକୁ କେବେ ନ ଛୁଇଁବ ।
(କାହା) ପାତ୍ରରେ କେବେ ନ ଖାଇବ ।
(କାହା) ବିଛଣା ପାରି ନ ଶୋଇବ ।
(ନିଜ) ଲୁଗାପଟା ବାରି ଧୋଇବ ।
(ଯାଇ) ସାଇଙ୍କ ହାତକୁ ଗୃହିଁବ ।

ଆଦ୍ୟରୁ ରୋଗକୁ ଗୋପନ ନ ରଖି
ପ୍ରତିକାର ଯେବେ ଲୋଡ଼ିବ,
ଅତି ସହଜରେ ରୋଗ ହଟିଯିବ
ନ ହେଲେ ସେ ରୋଗ ମାଡ଼ିବ ।
(ଯେବେ) ପ୍ରତିକାରକୁ ନ ଲୋଡ଼ିବ ।
(ହେଲା) କଲେ ସେ ରୋଗ ନ ଛାଡ଼ିବ ।

—ନିରୁପମା—

(ବେଲା) ଗଡ଼ାଇଲେ ବଳେ ବଢ଼ିବ ।
(ଡାଳ) ଜବାଣୁ ସେ କେତେ ଗୁଣ୍ଡ଼ିବ ।
(ଅଙ୍ଗେ) ମୂଳ ଭିଡ଼ି ସିନା ଗାଡ଼ିବ ।
(ଡାଳୁ) ଡଡ଼ବାଟି ଭିଡ଼ ପଡ଼ିବ ।
(ପୁଣି) କେତେ ଜା ଦେହକୁ ଉଡ଼ିବ ।

ବିଜ୍ଞଜନେ ଯେବେ ହେଲାରେ ହେଲାରେ
ମୂଳରୁ ନ ଜଗି ଟାଳିବ,
ବଳିଗଲେ ରୋଗ ବଳ ନ ପାଇବ
ଗୁଳ୍ମକୁ ପତ୍ରକୁ ଖାଇବ ।
(କ୍ରମା) ପତ୍ରକୁ ଗୁଳ୍ମକୁ ଖାଇବ ।
(ରୋଗ) ଅଙ୍ଗରୁ ଅଙ୍ଗକୁ ଖେଳିବ ।
(ପଡ଼ା) ପଡ଼ୋଶୀ ଘରକୁ ଛଳିବ ।
(କ୍ରମେ) ଗ୍ରାମରୁ ଗ୍ରାମକୁ ଚଳିବ ।
(ହେଲେ) ଦେଶକୁ ଶେଷକୁ ଜାଳିବ ।
(ଆଗେ) ନ ଖାଇ ପତ୍ରକୁ ଖାଇବ ।
(ଖାଇ) ସେ କାଳେ ଫଳ ନ ଫଳିବ ।

(ସମସ୍ତଙ୍କର ପ୍ରସ୍ଥାନ)

———

—ନିରୁପମା—

## ୮ମ ଦୃଶ୍ୟ

### ପଲ୍ଲିବସତି

(କେତେ ଜଣ ପଲ୍ଲିବାସୀ ଦଉଡାଦଉଡ଼ି ହୋଇ ପ୍ରବେଶ)

୧ମ-ପ-ବାସୀ—କଣ ହୋଇଛି କେଜାଣି । କାହିଁକି ଆଜି ସିପେଇ-
ଗୁଡ଼ାକ ଅସି ଦାଣ୍ଡଯାକ ମେଲାମେଲା ହୋଇ ବୁଲୁଛନ୍ତି ।

୨ୟ-ପ—କେଜାଣି କାହାଘରେ ଝୁଣି କି ଚୋରି ଡକେଇତି ହୋଇଥିବ ।

୩ୟ-ପ—କନ୍ଥ ତ କୁଆଡୁ ଶୁଣାଗୁଣା ନାହିଁ । ଦାରୁଗା, ଜମାଦାର,
ସିପେଇ—ଚାଲ ଚାଲ, ହେଇ ହେଇ ଏଆଡୁ ଆଉ ଦୁଇଟା
ସିପେଇ ଆସୁଛନ୍ତି ।

୪ର୍ଥ-ପ—ଚାଲ ଚାଲ ପଳେଇବା, ଏଠି ଆଉ ରହିବା ନାହିଁ ।

(ସମସ୍ତଙ୍କର ଦ୍ରୁତଗତିରେ ପ୍ରସ୍ଥାନ—ଆଉ କେତେ ଜଣ
ପଲ୍ଲିବାସୀଙ୍କର ଦଉଡ଼ ଦଉଡ଼ି ପ୍ରବେଶ)

୧ମ-ପ— ଘେରିଗଲେଣି ରେ ଗାଁ ଚାରିପାଖରେ ଘେରିଗଲେଣି ! କୁଆଡ଼େ
କାହାକୁ ଛାଡୁନାହାନ୍ତି, ଯିବା କୁଆଡ଼େ !

୨ୟ-ପ—ହେଇ; ଫେର ଏଣୁ ବ ତିନଟା ଆସିଲେଣି । ଏଥି ଆଡ଼କୁ
ମୁହିଁଲେଣି । ଆମ୍ଭୁକୁ ଦେଖିଲେଣି, ଯିବା କୁଆଡେ !

(ଥରି ଥରି ପଳାଇବାକୁ ଉଦ୍ୟମ, ୩ଜଣ ସିପାହିଙ୍କର ପ୍ରବେଶ)

୧ମ ସିପାହି— ପଳେଇଚ କୁଆଡ଼େ ? ଆସ, ତୁମକୁ ସବୁ ଦାରୁଗାବାବୁ
ଡାକୁଛନ୍ତି ।

ପଲ୍ଲୀବାସୀଗଣ—(ଥର ଥର) ଏଁ ଏଁ । କାହିଁକି ଆମୁକୁ ଡାକୁଛନ୍ତି ଦାରୁଗାବାବୁ ! ଆମେ ତ କିଛି ଜାଣୁନା ।

୨ୟ-ପ—(ଥର ଥର) ଦ୍ୱାହି ସିପେଇବାବୁ, ଦ୍ୱାହି ସିପେଇବାବୁ, ଆମେ ତ କିଛି କରି ନାହୁଁ । କାଲି ସଞ୍ଜରେ ମୁଁ ସାମକେନା ପଣ୍ଟୁ ସାବଳଟା ନେଇ ଆସିଥିଲି । ଆଜ୍ଞା ଆଜି ତାଙ୍କ ସାବଳ ତାଙ୍କୁ ଦେଇ ଆସିବି ।

୩ୟ-ପ—ମୁଁ ମୁଁ ମୁଁ ଆଜ୍ଞା ଆଜିକି ସ୍ପଶଦନ ତଳେ ଗୋପାଳସାହୁଙ୍କ ବାଡ଼ିରୁ କଦଳୀ କାନ୍ଧଏ କାଟି ଆଣିଥିଲି । ରଖିଛୁ, ରଖିଛୁ ଆଜ୍ଞା ରଖିଛୁ । ପାଚିଲେ ତାଙ୍କ କଦଳୀ ତାଙ୍କୁ ଦେଇ ଆସିବି ।

୪ର୍ଥ-ପ—ଦ୍ୱାହି ସିପେଇବାବୁ ! ଦ୍ୱାହି ସିପେଇବାବୁ ! ଆମେ ନିର୍ଦ୍ଦୋଷୀ । ଆମେ କିଛି କରି ନାହୁଁ । ଆମୁକୁ ମାଫ୍ ଦିଅ । ଦ୍ୱାହି ସିପେଇବାବୁ !

୫ମ-ପ—ଦ୍ୱାହି ସିପେଇବାବୁ ! ଆମେ ଆପଣଙ୍କ ପାଖରେ ହାଜର ହେବୁଁ । ଆମକୁ ଛାଡ଼ିଦିଅ ।

୨ୟ-ପ—ସିପେଇବାବୁ ଆପଣଙ୍କ ପାନଖିଆ ନିଅନ୍ତୁ, (ଅଣ୍ଟାରୁ ପଇସା ଖୋଜିବା ) ଆମୁକୁ ଖଲାସ କର ।

୧ମ-ସିପାହି—ଚାଲ ଚାଲ, ଦାରୁଗା ବାବୁଙ୍କ ପାଖରେ ସବୁ ହାଲ କହିବ । ତେମେ ସମସ୍ତେ ଦୋଷୀ । ତମୁକୁ ଛାଡ଼ିବା ନାହିଁ । ତେମେ ପୂରା ଦୋଷୀ ।

୨ୟ-ପ—ଆମେ ଆଜ୍ଞା, ଆମେ ଆଜ୍ଞା ନିର୍ଦ୍ଦୋଷୀ ।

୨ୟ-ସି—ତେମେ ଆଜ୍ଞା, ତେମେ ଆଜ୍ଞା, ପୂରାଦୋଷୀ ! ଚାଲ ଜଲଦି । ନ ହେଲେ ହାତକଡ଼ି ଚଢ଼େଇବା । ( ହାତକଡ଼ି ଦେଖାଇବା )

ପଲ୍ଲୀବାସୀଗଣ—ଦ୍ୱାହି ସିପେଇବାବୁ ! ଦ୍ୱାହି ସିପେଇବାବୁ । ( ସମସ୍ତଙ୍କର

—ନିରୁପମ—

ପ୍ରସ୍ଥାନ, ସବ୍‌ଇନ୍‌ସ୍ପେକ୍ଟର—ସିପାହିଗଣ ଓ ଗ୍ରାମବାସୀମାନଙ୍କର ପ୍ରବେଶ । )

ସ:ଇ—(ଗୋଟିଏ ତାଲିକା ପାଠକରି) ପଣ୍ଡିଲ ପଧାନ, ଦାମଲେଙ୍କା, କଣ୍ଟ୍ରର ସାହୁ, ଲକ୍ଷଣ ଦଳେଇ—ଏମାନେ ସବୁ କିଏ କିଏ ଏଠାରେ ଅଛ ? ଆଜି ମାଜିଷ୍ଟ୍ରେଟ ସାହେବ ଏଠାକୁ ଆସିବେ । ମାଜିଷ୍ଟ୍ରେଟ ସାହେବଙ୍କ ହଜୁରରେ ସମସ୍ତେ ହାଜର ହେବ ।

୧ମ-ଗ୍ରା—ଏ ଗ୍ରାମରେ ଏ ନାଆଁ ର ଲୋକ କେହି ନାହାନ୍ତି ।

ସ:ଇ—କେହି ନାହାନ୍ତି !

୨ୟ-ଗ୍ରା—ଆମ ଏ ଗାଆଁ ରେ କେହି ନାହାନ୍ତି ।

ସ:ଇ—ଆଚ୍ଛା ଚଣ୍ଡ଼ିଜେନା, ଫଗୁ ମଲିକ, ପଦ୍ମନ ଘଡ଼େଇ—ଏମାନେ କେହି ଅଛନ୍ତି ?

ଗ୍ରାମବାସୀଗଣ—ଏ କେହି ଆମ ଗାଁ ଲୋକ ନୁହନ୍ତି ।

ସ:ଇ—ଆଚ୍ଛା, ତମ ଏଠା ଜମିଦାର ଜମିଦାରୀ ଲୋପହେବାକୁ ବସିଥିବା ଜାଣି କେତେକ ଗୋଚର ଓ ସର୍ବସାଧାରଣ ଜମି ଓ ଜଙ୍ଗଲ ସବୁ ଏଠାର ଗୋଟାଏ ଆଶ୍ରମରେ ରହୁଥିବା କେଇଜଣଙ୍କୁ ଦେଇଦେବା ଓ ସେମାନେ ଜଙ୍ଗଲ କାଟି ତୋଷରଫ କରୁଥିବା ଏବଂ ଗ୍ରାମବାସୀଙ୍କୁ ବେଆଇନ ବଳପୂର୍ବକ ବେଦଖଲ କରିବା ଆଦି ମର୍ମର ଅଭିଯୋଗ କରି ସେମାନଙ୍କୁ ଦଣ୍ଡ ଦିଆଯିବା ପାଇଁ ମାଜିଷ୍ଟ୍ରେଟ ସାହେବଙ୍କର ହଜୁରକୁ କିଛି ଦରଖାସ୍ତ କେହି ପଠାଇ ଥିଲ ?

୧ମ-ଗ୍ରା—ନାହିଁ ଆଜ୍ଞା ! ଆମ ଏ ଗ୍ରାମରୁ ଏପରି ଦରଖାସ୍ତ କେହିହେଁ କେବେ ଦେଇ ନାହାନ୍ତି ।

୨ୟ-ଗ୍ରା—ଆମ ଏଠାରେ ନିକଟରେ ଗୋଟିଏ ଆଶ୍ରମ ହୋଇଛି । ସେ ଆଶ୍ରମ ଯୋଗୁଁ ଆମ୍ଭେମାନେ କେତେ ଉପକାର ପାଉଛୁଁ । ଏଁ ଆଖ-

ପାଖ କେତେ ଖଣ୍ଡ ଗ୍ରାମର ଘରେ ଘରେ ମାଇପେସବୁ ଓ କେତେ ଅକ୍ଷମ ପୁରୁଷ ସବୁ ଖାଲି ବସି ରହୁଥିଲେ । ସେମାନେ କେତେ କାଠର କେତେ ପ୍ରକାର କାମ ଶିଖି ସମସ୍ତେ କିଛି କିଛି ଆୟ କରି ପାରୁଛନ୍ତି । କେହି ବସି ନାହାନ୍ତି । ଆମ ଗ୍ରାମର ଲୋକେ ସେମାନଙ୍କ ବିରୁଦ୍ଧରେ ଏପରି ଦରଖାସ୍ତ କରିବେ, ଏହା କଦାପି ହୋଇ ନ ପାରେ ।

୩ୟ-ଗ୍ରା—କାହିଁ କାହିଁ କୁଷ୍ଠରୋଗୀ ସବୁ ଆସି ସେଠାରୁ ଔଷଧ ନେଇ ଯାଉଛନ୍ତି । କେତେ ଲୋକ ଭଲ ହେଉଛନ୍ତି । ଆଶ୍ରମର ଲୋକେ ସଦାବେଳେ ଗାଁକୁ ଗାଁ ଆସି କେତେ ଉପଦେଶ ଦେଉଛନ୍ତି । ଆମେ ତାଙ୍କ ନାଁରେ ଏପରି ଦରଖାସ୍ତ ଦେବୁଁ ?

୨ୟ-ଗ୍ରା—ଏ ଦରଖାସ୍ତ ଯେ ଦେଇଛନ୍ତି ସେ ନିଶ୍ଚୟ ଆମର ବିପକ୍ଷ ଲୋକ ହୁଏ ! ଆମ ଏ ନିକଟର କୌଣସି ଗ୍ରାମବାସୀ ଏପରି ଦରଖାସ୍ତ ଦେବା ସମ୍ଭବ ନୁହେଁ । ଏ ବୋଧହୁଏ କେହି ଦୂରର ଲୋକ ହୋଇପାରନ୍ତି । ଆମ୍ଭମାନଙ୍କର ଏ ସୁବିଧା ସହି ନ ପାରି ହିଂସାରେ ଏପରି ଦରଖାସ୍ତ କରିଛନ୍ତି ।

ସ: ଇ—ତେବେ ଏ ଗାଁର କେହି ଏ ଦରଖାସ୍ତ କରିନାହାନ୍ତି ?

ଗ୍ରାମବାସୀଗଣ—ନା, ନା, ନା ।

ସ: ଇ—ଆଚ୍ଛା, ଯିବା ଅନ୍ୟ କୋଉଠିକାର କିଏ ଏ ଦରଖାସ୍ତ କରିଛି ବୁଝି ଦେଖିବା ।

(ସମସ୍ତଙ୍କର ପ୍ରସ୍ଥାନ)

—୦—

—ଯବନିକା—

## ନବମ ଦୃଶ୍ୟ

### କ୍ୟାମ୍ପରେ ଜଜ୍ ମାଜିଷ୍ଟ୍ରେଟଙ୍କ ଇଜଲାସ

(ଟେବୁଲ ଉପରେ ଫାଇଲ ସୁସଜ୍ଜିତ, ଏକ ପାର୍ଶ୍ୱରେ ଗୋଟିଏ ବେଞ୍ଚରେ ପେସ୍କାର, ଅନ୍ୟ ପାର୍ଶ୍ୱରେ ଆଉ ଗୋଟିଏ ବେଞ୍ଚରେ ପୋଲିସ-ଇନ୍‌ସପେକ୍‌ଟର ପ୍ରଭୃତି ଉପବିଷ୍ଟ—ସିପାହୀ, ଦର୍ଶକବୃନ୍ଦ, ଚପରାସି ପ୍ରଭୃତି ଦଣ୍ଡାୟମାନ—ଜଜ୍ ମାଜିଷ୍ଟ୍ରେଟଙ୍କର ପ୍ରବେଶ—ଇନ୍‌ସପେକ୍‌ଟର ପ୍ରଭୃତି ଦଣ୍ଡାୟମାନ—ସମସ୍ତଙ୍କର ଅଭିବାଦନ, ଜଜ୍ ମାଜିଷ୍ଟ୍ରେଟ ଓ ଇନ୍‌ସପେକ୍‌ଟର ପ୍ରଭୃତିଙ୍କ ଯେ ଯାହା ସ୍ଥାନରେ ଉପବିଷ୍ଟ )

ପୋ ଇନ୍—(ଦଣ୍ଡାୟମାନ ହୋଇ) ହଜୁର୍ ଏ ଇଲାକାର ପ୍ରେସିଡେଣ୍ଟଙ୍କର ଏଠାରେ ଉପସ୍ଥିତ ରହିବା ଖୁବ୍ ଆବଶ୍ୟକ । ସେ ଅସୁସ୍ଥ ଓ ବୟୋବୃଦ୍ଧ ଲୋକ । ତାଙ୍କୁ ଏଠାରେ ବସିବା ପାଇଁ ଅନୁମତି ଦିଆଯାଉ ।

ଜ-ମା—ହଉ ବସନ୍ତୁ ।

ପୋ-ଇନ୍—(ଜଣେ ସିପାହୀ ପ୍ରତି) ପ୍ରେସିଡେଣ୍ଟଙ୍କୁ ଡାକିଆଣ । (ସିପାହୀର ପ୍ରସ୍ଥାନ, ପ୍ରେସିଡେଣ୍ଟଙ୍କ ସହିତ ପୁନଃପ୍ରବେଶ—ଇନସପେକ୍‌ଟରଙ୍କର ନିର୍ଦ୍ଦେଶମତେ ପ୍ରେସିଡେଣ୍ଟଙ୍କର ଗୋଟିଏ ଚେୟାରରେ ଉପବେଶନ )

ଜ-ମା—ମୁଦେଇ ମୁଦାଲା ସମସ୍ତେ ଉପସ୍ଥିତ ଅଛନ୍ତି ତ ?

ପେସକାର—ନାହିଁ ତ, କାହାକୁ ଦେଖୁ ନାହିଁ । ଚପରାସୀ ଥରେ ଡାକିଦିଅ— "ପଦ୍ମଲ ପଧାନ"

ଚପରାସୀ—ପହଲ ପଧାନ ମୁଦେଇ ହାଜର, ପହଲ ପଧାନ ମୁଦେଇ ହାଜର, ପହଲ ପଧାନ ମୁଦେଇ ହାଜର—ଗରହାଜର !

ପେସ୍‌କାର—ଦାମ ଲେଙ୍କା ।

ଚପରାଶୀ – ଦାମ ଲେଙ୍କା ମୁଦେଇ ହାଜର (ତିନଥର)—ଗରହାଜର ।

ଜ-ମା—ମୁଦେଇମାନଙ୍କ ତରଫରୁ ପୁଲିସ ଇନ୍‌ସପେକ୍‌ଟର ତ ଅଛନ୍ତି ।

ପେସ୍‌କାର—ହଁ, ପୋଲିସ ଏ ମାମଲା ଚଳାଉଛନ୍ତି ।

ଜ-ମା—ଦେଖ ଆସାମୀମାନଙ୍କ ଉପରେ ନୋଟିସ ବିଧିମତେ ଜାରି ହୋଇଛି କି ନା, ସେମାନେ ହାଜର ଅଛନ୍ତି କି ନା ? କାହାର ନାମରେ ଓ୍ୱାରଣ୍ଟ ପଠାଇବା ଦରକାର କି ନା ?

ପେସ୍‌କାର—ଜାରି ରିପୋର୍ଟ ପଢ଼ୁଛି । (ରିପୋର୍ଟ ପଢ଼ିବାକୁ ଉଦ୍ୟମ)

ଜ-ମା—ନୋଟିସ ସମନ ସବୁ ପ୍ରେସିଡ଼େଣ୍ଟ ଜାରି କରାଇଥିବେ । ପ୍ରେସିଡେଣ୍ଟ କହନ୍ତୁ କପରି ଜାରି ହୋଇଛି ।

ପ୍ରେସିଡେଣ୍ଟ—ହଜୁର ମୋର ରିପୋର୍ଟ ପଢ଼ାଯାଉ । ମୁଁ ଜାରି କରାଇ ନ ପାରି ଓ୍ୱାପସ ଦେଇଥିଲି ।

ଜ-ମା—ଆଗେ ପ୍ରେସିଡ଼େଣ୍ଟଙ୍କ ରିପୋର୍ଟ ପଢ଼ ।

ପେସ୍‌କାର—(ରିପୋର୍ଟ ଧରି) ଧର୍ମାବତାର ! ମୋହର ଏକମାତ୍ର ପୁତ୍ର ଶ୍ରୀ ଚନ୍ଦ୍ରଶେଖର ନିରୁଦ୍ଦେଶ ହେବାଦିନରୁ ମୁଁ ଶଯ୍ୟାଗତ—ପୀଡ଼ିତ । ମୁଁ ଆଉ କୌଣସି କାର୍ଯ୍ୟ କରିବାକୁ ଅକ୍ଷମ । ତେଣୁ ପ୍ରେସିଡେଣ୍ଟ କାର୍ଯ୍ୟରୁ ମୋତେ ଅବ୍ୟାହତି ଦେବା ପାଇଁ ଇସ୍ତଫା ପଠାଇ ସାରିଛି । ଏ ନୋଟିସ ଜାରି କରାଇ ପାରିବ ନାହିଁ । ତେଣୁ ଓ୍ୱାପସ ପଠାଇଲି । ପୋଲିସ ଜରିଆରେ ଏହା ଜାରି କରାଯାଉ ।

ଜ-ମା—ଦେଖ, ପୋଲିସ କପରି ଜାରି କରାଇଛନ୍ତି କି ନା ।

ପେସ୍‌କାର—(ପୋଲିସ ରିପୋର୍ଟ ପାଠ) ଆସାମୀମାନଙ୍କ ତରଫରୁ ସମନ ବୁଝି ପାଇଲୁଁ । ସ୍ୱାକ୍ଷର—ଅନାମ ଦାସ, ସାଃ ଅଜ୍ଞାତପୁର ।

—ନିରୁପମା—

ଜି-ମା—ଚାର୍ଜ ରିପୋର୍ଟର ହାଲତ ଏହି । ଭିତରେ କଣ ଲେଖା ଅଛି ପଢ଼ିଲ ।

ପେସ୍‌କାର—ମୁଦ୍ଦେଇ ଓ ମୁଦାଲିମାନଙ୍କର ନାମ, ଇତ୍ୟାଦି, ଇତ୍ୟାଦି; । ତୁମ୍ଭେମାନେ ଦଣ୍ଡ ବିଧି ଆଇନର ୮୬୭ ଦଫା ଅନୁସାରେ ଅପରାଧ କରିଥିବାରୁ କାହିଁକି ଦଣ୍ଡିତ ନ ହେବ—ଇତ୍ୟାଦି, ଇତ୍ୟାଦି ।

ଜି-ମା—ଦଣ୍ଡବିଧି ଆଇନର ୮୬୭ ଦଫା କୋଉଠୁଁ ଅଇଲା ?

ପେସ୍‌କାର—ବୋଧହୁଏ କେହି ଏପ୍ରେଣ୍ଟିସ୍ କର୍ମୀ ଏହା ପୂରଣ କରିଛି । ପେନାଲ୍ କୋଡ୍‌ର ୫୨୯ ଦଫା ଓ ୪୪୭ ଦଫା ଦୁଇ ସଂଖ୍ୟାକୁ ମିଶାଇ ଦେଇ ମୋଟ ୮୬୭ ଦଫା ବୋଲି ଲେଖି ଦେଇଛି ।

ଜି-ମା—ବେଶ୍ ତ ! ଏଥିରେ ମାମଲା ଚଳିବ କିପରି ?

ପୋ-ଇନ୍—ହଜୁର ! ସେଥିରେ ଯାହା ଲେଖା ଥାଉ—ଚାର୍ଜ ହେଉ ବା ନ ହେଉ, ଦୁଇଜଣ ଆସାମୀ ଗିରଫ ହୋଇଅଛନ୍ତି । ସେମାନଙ୍କୁ ପଚରାଯାଉ—ସେମାନେ ଯେବେ ଦୋଷ ସ୍ୱୀକାର କରନ୍ତି, ତାଙ୍କୁ ଶାସ୍ତି ଦିଆଯାଉ; ଯେବେ ଅସ୍ୱୀକାର କରିବେ ତେବେ ସେମାନଙ୍କ ଉପରେ ଓ ଅନ୍ୟମାନଙ୍କ ଉପରେ ସାକ୍ଷୀ ସମନ ଜାରିର ଆଦେଶ ହେଉ ।

ଜି-ମା—ଆଚ୍ଛା, ସେ ଆସାମୀମାନଙ୍କୁ ହାଜର କର । ପେସ୍‌କାର ସେମାନଙ୍କ ନାମ ଲେଖ ।

ପୋ-ଇନ୍—ସିପାହି, ଆସାମୀମାନଙ୍କୁ ନେଇ ଆସ । ପେସ୍‌କାର ବାବୁ ଲେଖନ୍ତୁ, ଦୁଇ ନମ୍ବର ମୁଦାଲି ଚନ୍ଦ୍ରଜୀବନ ସେବକ; ୩ ନମ୍ବର ମୁଦାଲି ନିର୍ମଳ ସେବିକା ( ପେସ୍କାରଙ୍କର ଲେଖିବା ଓ ସିପାହି-ମାନଙ୍କ ସହ ଚନ୍ଦ୍ରଜୀବନ ସେବକ ଓ ନିର୍ମଳ ସେବିକାଙ୍କର ପ୍ରବେଶ ଓ ଅଭିବାଦନ )

ଜି-ମା—ତୁମ୍ଭମାନଙ୍କର କିଛି କହିବାର ଅଛି ? ତୁମ୍ଭେମାନେ ଦୋଷୀ କି ନିର୍ଦ୍ଦୋଷ ? ଜଣ ଜଣ କରି କହ ।

—ନିରୁପମା—

ଚନ୍ଦ୍ର—ଏ ସମସ୍ତ ଅପରାଧ ସକାଶେ ଏକା ମୁଁ ଦୋଷୀ; ଅନ୍ୟ କାହାର କିଛି ନାହିଁ ।

ନିର୍ମଳ—ମୁଁ ସମସ୍ତ ଅପରାଧର ମୂଳ । ମୁଁ ଏକମାତ୍ର ଦୋଷୀ; ଅନ୍ୟ କେହି ଦୋଷୀ ନୁହନ୍ତି ।

ପ୍ରେସିଡ଼େଣ୍ଟ-ମଙ୍ଗରାଜ—( ହଠାତ୍ ଉଠିପଡ଼ି ହାତ ଯୋଡ଼ି ) ହଜୁର ! ମୋହର ଗୁହାରି ଶୁଣାଯାଉ । ଯେବେ କୌଣସି ଅପରାଧ ହୋଇଥାଏ, ତେବେ ସେ ଅପରାଧର ମୂଳ ମୁହିଁ । ମୁହିଁ ହେଉଛି ଏକମାତ୍ର ଦୋଷୀ । ଅନ୍ୟ ସମସ୍ତେ ନିର୍ଦ୍ଦୋଷ । ମତେ ଉପଯୁକ୍ତ ଶାସ୍ତି ଦିଆଯାଉ । ମୋହର ଆଶା ପୂର୍ଣ୍ଣ ହୋଇଗଲା, ମୋହର ରୋଗ ଛାଡ଼ିଗଲା । ମୋହର ପୁତ୍ରକୁ ମୁଁ ହରାଇଥିଲି । ମୋହର ପୁତ୍ରକୁ ମୁଁ ପାଇଲି । ଏ ଆଶ୍ରମର ସବୁ ଖବର ମୁଁ ପାଉଥିଲି । କିନ୍ତୁ ଏହା ଯେ ମୋହର ପୁତ୍ର ଓ ପୁତ୍ରବଧୂଙ୍କର କାର୍ଯ୍ୟ, ତାହା ଆଦୌ ଜାଣି ପାରି ନ ଥିଲି । ମୁଁ କୁଷ୍ଠରୋଗୀଙ୍କୁ କେବେ ପାଖରେ ପୂରାଇ ଦେଉ ନ ଥିଲି, ଶେଷକୁ ମୋହର ଘରେ କୁଷ୍ଠ-ରୋଗ ପ୍ରବେଶ କଲା । କୁଷ୍ଠରୋଗ ପାଇଁ କେବେହେଲେ କିଛି ଦାନ କରି ନ ଥିଲି । ବର୍ତ୍ତମାନ ମୋହର ସମସ୍ତ ସମ୍ପତ୍ତି ମୁଁ ମୋହର ପୁତ୍ର ହସ୍ତରେ ଅର୍ପଣ କରୁଛି । ସେ ତାହାର ଇଚ୍ଛା ଅନୁସାରେ କୁଷ୍ଠସେବା ପାଇଁ ବ୍ୟୟ କରିପାରିବ । ମୁଁ ଓ ମୋର ସ୍ତ୍ରୀ ଉଭୟେ ଆସି ଏହି ଆଶ୍ରମରେ ରହି ଶେଷଜୀବନ କୁଷ୍ଠ-ସେବାରେ କଟାଇବୁଁ । ( ଦର୍ଶକମଣ୍ଡଳୀରୁ ଘନ ଘନ କରତାଳି )

ଜି-ମା—ଆସାମୀମାନଙ୍କ ବିରୁଦ୍ଧରେ କୌଣସି ପ୍ରମାଣ ନାହିଁ । ମୁଁ ମୋହର ଜଣେ ବନ୍ଧୁଙ୍କ ସହିତ ଅପରିଚିତ ପରିଦର୍ଶକ ଭାବରେ ଆଶ୍ରମକୁ ଯାଇ ସେଠାର ସମସ୍ତ କାର୍ଯ୍ୟକଳାପ ଦେଖିଆସିଛି ।

ଏହା ଗୋଟିଏ ଆଦର୍ଶ ଅନୁଷ୍ଠାନ । ଏହିପରି ଅନୁଷ୍ଠାନ ସ୍ଥାନେ ସ୍ଥାନେ ଗଠିତ ହେବା ଆବଶ୍ୟକ । ତାହାହେଲେ ଗ୍ରାମମାନଙ୍କରୁ କୁଷ୍ଠରୋଗ ସହଜରେ ଦୂର ହୋଇପାରିବ । ଏହି ଆଶ୍ରମରେ ଆଶ୍ରମବାସୀମାନଙ୍କୁ ଓ ଅନ୍ୟ ଗ୍ରାମବାସୀମାନଙ୍କୁ ଗ୍ରାମ୍ୟ କୁଟୀର ଶିଳ୍ପ ଶିକ୍ଷା ମଧ୍ୟ ଦିଆ ଯାଉଅଛି । ଗ୍ରାମବାସୀମାନେ କୁଟୀର-ଶିଳ୍ପ ସାହାଯ୍ୟରେ ଅର୍ଥ ଉପାର୍ଜ୍ଜନର ପନ୍ଥା ମଧ୍ୟ ଶିଖୁଅଛନ୍ତି । ଆସାମୀମାନେ ନିର୍ଦ୍ଦୋଷ । ସେମାନଙ୍କର ଉଦ୍ୟମ ଖୁବ୍ ମହତ୍ ଓ ସାଧୁ । ସିପାହି ! ଆସାମୀମାନଙ୍କୁ ମୁକ୍ତ କର । ( ସିପାହିମାନେ ଆସାମୀମାନଙ୍କଠାରୁ ଅନ୍ତର ହୋଇଯିବା ) ଆମର ହାତ-ପାଣ୍ଠିରୁ ବର୍ତ୍ତମାନ ଦୁଇ ହଜାର ଟଙ୍କା ଏହି ଆଶ୍ରମର ବ୍ୟୟ ନିମନ୍ତେ ଦେବା ପାଇଁ ମଞ୍ଜୁର କଲୁଁ । ଅଧିକ ସାହାଯ୍ୟ ପାଇଁ ସରକାରଙ୍କୁ ଲେଖିବୁଁ । ( କରତାଳି ଦର୍ଶକମଣ୍ଡଳୀରୁ ) ମଙ୍ଗରାଜ ମହାଶୟ ! ଆପଣଙ୍କର ଜୀବନ ଧନ୍ୟ ଯେ ଆପଣ ଏପରି ପୁତ୍ର ଓ ପୁତ୍ରବଧୂ ପାଇଅଛନ୍ତି । ଆପଣଙ୍କ ଜୀବନ ସାର୍ଥକ । (ଆସାମୀ ଦୁଇଜଣଙ୍କର ମଙ୍ଗରାଜଙ୍କର ଚରଣ ଧାରଣ କରି ଅଭିବାଦନ— ଦର୍ଶକମଣ୍ଡଳୀରୁ ଘନ ଘନ କରତାଳି )

ଚନ୍ଦ୍ର—ପିତଃ ! ମୁଁ ଆପଣଙ୍କର ସେହି ଅଯୋଗ୍ୟ ଓ ଅବାଧ୍ୟ ପୁତ୍ର ଶିଖର ।

ନିର୍ମଳ—ପିତଃ ! ମୁଁ ଆପଣଙ୍କର ଅଯୋଗ୍ୟା ଭାଗ୍ୟହୀନା ପୁତ୍ରବଧୂ ନିରୁପମା । (ଦର୍ଶକମଣ୍ଡଳୀରୁ କରତାଳି)

[ଯବନିକା ପତନ]



—ନିରୁପମା—

# ପଞ୍ଚମ ଅଧ୍ୟାୟ

## ପ୍ରଥମ ଦୃଶ୍ୟ

ଆଶ୍ରମ

(ମଙ୍ଗରାଜ, ପ୍ରଭାବତୀ, ଚନ୍ଦ୍ରଶେଖର, ନିରୁପମା, ନନ୍ଦା ଓ ଅନ୍ୟ
ଆଶ୍ରମବାସୀଗଣ )

ଗୀତ

(ବତଲକୁ ଆଲିଙ୍ଗନ ସ୍ୱରରେ):

କୁଷ୍ଠରୋଗ ମହାରୋଗ ପାଇ ସେ ଶୁଭ ସୁଯୋଗ
ମାଡ଼ି ମାଡ଼ି ଯାଉଅଛି ଗ୍ରାମ ଗ୍ରାମରେ ।
ଥାଇ ଅନାଅନା ହୋଇ ବସି ଦେଖୁଥିଲେ ଗୁହି
କ୍ରମେ କ୍ରମେ ଯିବ ପଶି ସେ ଘରେ ଘରେ ।
ହଟାଇ ନ ଦେଲେ ତା ଦାଉ
ଘରକୁ ସମ୍ଭାଳି ତାକୁ ନ ହେବ ଆଉ ।

ଛୁଆଁ ରୋଗ ଜାଣ ସେହି ଜାଣି ନ ପାରିବ କେହି
କାହାକୁ କେମନ୍ତେ କାହୁଁ ଆସି ଛୁଇଁବ
ମୂଳରୁ ତାକୁ ନ ମାର ନଚେତ ହେବାଯାଏ ଘାର
ବସି ବସି କସ ସେ ଦଶାକୁ ଗୁହିଁବ ?
ସେକାଳେ ଅକାଳେ ଭାବିବ
ଜଣ ଜଣ କରି ପଣ ପଣଙ୍କୁ ସେ ଜାଳିବ ।।

— ନିରୁପମା—

ନିଜ ହିତ ପର ହିତ  ସୁମର ଯେ ଯାହା ଚିତ୍ତ
ବେଗେଁ ଲଗ କୁଷ୍ଠରୋଗ ଦେଶରୁ ଯାଉ
ବିଳମ୍ବେ ବିଫଳ ଶ୍ରମ  ଏ ବାଣୀ ନୁହଇ ଭ୍ରମ
ବେଳହୁଁ ଲଗିଯା ରୋଗ ମୂଳ ନ ଥାଉ ।
ଧନ-ଜନ-ମନ ଖଟାଇ
ଲଗିଗଲେ କୁଷ୍ଠରୋଗ ରହିବ ନାହିଁ
ସେ ଭାଇ ରହିବ କାହିଁ ?

—ସମାପ୍ତ—



କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ·ରାଧାନାଥ ରଥଙ୍କ ଦ୍ୱାରା ମୁଦ୍ରିତ—୧୯୫୨

